# ପୂଜାରିଣୀ

ଡକ୍‌ଟର ମାୟାଧର ମାନସିଂହ

ପରିବର୍ଦ୍ଧିତ ସଂସ୍କରଣ

ପ୍ରକାଶକ—

ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ

ବ୍ରହ୍ମପୁର (ଗଞ୍ଜାମ)

୧୯୬୦

Rs 3 - 00 P.

ମୋର ବନ୍ଧୁ ଓ ବୈଷ୍ଣବ ବନ୍ଧୁ

**ଶ୍ରୀଯୁକ୍ତ ରତ୍ନାକର ଷଡ଼ଙ୍ଗୀ**

କରକମଳେଷୁ—

**ଲେଖକ**

# ଆଦ୍ୟ-ଭାଷ

ଅବାଙ୍ଗ୍‍ମାନସଗୋଚର ଭଗବାନଙ୍କୁ ହିନ୍ଦୁ ସାଧକ ଓ ଭକ୍ତ ଯୁଗେ ଯୁଗେ ମୃତ୍‍-କାଷ୍ଠ-ପାଷାଣର ପ୍ରତିମା ମଧ୍ୟରେ ଲାଭ କରି ଆସିଅଛି । ଏ ଯୁଗର ବିଜ୍ଞାନ-ପ୍ରଭାବିତ ଲୋକେ ଭଗବାନ୍ ବା ତାଙ୍କର ବ୍ୟକ୍ତିତ୍ୱକୁ ସନ୍ଦେହ କରିପାରନ୍ତି; କିନ୍ତୁ ଏହି ଯୁଗରେ ଦକ୍ଷିଣେଶ୍ୱରର ଋଷି ରାମକୃଷ୍ଣ ପରମହଂସଙ୍କ ଜୀବନରେ ଯାହା ଘଟିଯାଇଛି, ସେଥିରେ ଅବିଶ୍ୱାସୀମାନଙ୍କର ଚକ୍ଷୁ ଫିଟିବାର କଥା । ମାନବାତ୍ମାର ପ୍ରଣୟ-କ୍ଷୁଧା ନିବୃତ୍ତି କରିବା ପାଇଁ ଭଗବାନ୍ ଯେ ଇନ୍ଦ୍ରିୟଗ୍ରାହ୍ୟ ରୂପ ପରିଗ୍ରହ କରିଥାନ୍ତି, ଏ ବିଷୟ ସତ୍ୟ ତାଙ୍କ ଜୀବନରେ ଉପଲବ୍ଧ ହୋଇଅଛି ।

ଏ ପୁସ୍ତକରେ ମୁଁ ଏପରି ଏକ ଘଟଣା ବର୍ଣ୍ଣନା କରିଅଛି । କିମ୍ବଦନ୍ତୀ ଅଛି ଯେ ସତ୍ୟବାଦୀର ସାକ୍ଷିଗୋପାଳ ସେହି ଗ୍ରାମର ଜନୈକ ବ୍ରାହ୍ମଣର ସୁନ୍ଦରୀ କନ୍ୟା ଲକ୍ଷ୍ମୀର ପ୍ରେମରେ ଆକୃଷ୍ଟ ହୁଅନ୍ତି । ପଣ୍ଡାମାନେ ଅନେକ ସମୟରେ ଦେବତାଙ୍କର ବେଣୁ ଲକ୍ଷ୍ମୀର ଗୃହରେ ପାଇଲେ । ଏହିକାଳ ଅନ୍ତର କେତେକ ସଙ୍କେତରୁ ଦେଉଳର କର୍ତ୍ତୃପକ୍ଷ ଦେବତାଙ୍କୁ ରାଧା-ବିରହିତ ଭାବି ରାଧାଙ୍କର ସ୍ୱର୍ଣ୍ଣ-ପ୍ରତିମା ଗଢ଼ାଇବାକୁ ଲାଗିଲେ । ପ୍ରତିମା ଆରମ୍ଭ ଦିନରୁ ଲକ୍ଷ୍ମୀର ଜ୍ୱର ହେଲା ଏବଂ ପ୍ରତିମା ସମ୍ପୂର୍ଣ୍ଣ ହେବା ମାତ୍ରକେ ଲକ୍ଷ୍ମୀର ମୃତ୍ୟୁ ହେଲା । ଉକ୍ତ ପ୍ରତିମା ବର୍ତ୍ତମାନ ସାକ୍ଷିଗୋପାଳଙ୍କର ସଙ୍ଗୀ ରୂପେ ପାର୍ଶ୍ୱ ମଣ୍ଡନ କରୁଅଛନ୍ତି ।

ରାଧାନାଥ "ପାର୍ଶ୍ୱଗୋପୀନାଥ-ହୃଦୟ-ହାରିଣୀ, ଦ୍ୱିଜକନ୍ୟା ଲକ୍ଷ୍ମୀ"ର କଥା ଟୀକାରେ ଉଲ୍ଲେଖ କରି ତାକୁ ଅମର କରି ଯାଇଅଛନ୍ତି । ଏ କରୁଣ ଘଟଣା ଓ ଏଇ ମହୀୟସୀ ବାଳିକା ଲେଖକର କଳ୍ପନାରେ ଗଭୀର ରେଖାପାତ କରିଥିଲେ । ଏହି ନଗଣ୍ୟ ରଚନାରେ ମୁଁ ସେଇ କଳ୍ପନାକୁ ଯଥାଶକ୍ତି ରୂପ ଦାନ କରିବାକୁ ଚେଷ୍ଟା କରିଅଛି ।

ଲକ୍ଷ୍ମୀର ପିତାମାତାଙ୍କ ନାମ ଜାଣିବାକୁ ମୁଁ ସେଇ ବଂଶର ବର୍ତ୍ତମାନ ବଂଶଧରଙ୍କ ନିକଟକୁ ପତ୍ର ଲେଖିଥିଲି, କିନ୍ତୁ ଉତ୍ତର ପାଇଲି ନାହିଁ । ଶେଷରେ ମୋର ଜଣେ ବନ୍ଧୁ ତା'ର ପିତାଙ୍କ ନାମ ବେଙ୍କେଶ୍ୱର ମହାପାତ୍ର ବୋଲି କହିଲେ—ମୁଁ ତାହା ହିଁ ରଖିଛି । ଅନ୍ୟସବୁ ଚରିତ୍ର କାଳ୍ପନିକ ।

**ମାୟାଧର ମାନସିଂହ**

# ନବ ସଂସ୍କରଣର ଭୂମିକା

ଏହା ବୋଧହୁଏ 'ଫୁଲଝରଣୀ'ର ଚତୁର୍ଥ ସଂସ୍କରଣ । ପ୍ରାୟ ୨୩।୨୪ ବର୍ଷ ତଳେ, ସମ୍ଭବତଃ ଏମ୍. ଏ. ପଢୁଥିଲାବେଳେ ଏ ନାଟିକାଟି ଲେଖିଥିଲି । ସବୁଜ-ସାହିତ୍ୟ-ସମିତିର ପ୍ରତିଷ୍ଠାତା ଗୁଣଗ୍ରାହୀ ଶରତ୍‌ଚନ୍ଦ୍ର ମୁଖାର୍ଜୀଙ୍କ ହାତରେ ଭାଗ୍ୟକୁ ପଡ଼ିବାରୁ ଏହା ଲେଖା ହେବାର ଅନତିବିଳମ୍ବରେ ମୁଦ୍ରିତ ଆକାରରେ ପ୍ରକାଶିତ ହୋଇ ପାରିଥିଲା । ନଚେତ୍ ଏହା ଯେ କେବେ ଛପା ହେବ, ତା ମୁଁ ସହଜରେ କଳ୍ପନା କରିପାରୁ ନ ଥିଲି । ସେତେବେଳେ ମୁଁ ପାଟନାରେ ଛାତ୍ର ଥାଏଁ । ଖରାଛୁଟି ହେବା ଉପରେ । ଓଡ଼ିଶାକୁ ଫେରିଆସିବାକୁ ବ୍ୟାକୁଳ । ସେହି ଛୁଟିରେ ମୋର ମଧ୍ୟ ପରିଣୀତ ହେବାର କଥା । ଏହି ସମୟରେ ଶରତ୍‌ବାବୁଙ୍କଠାରୁ ଖଣ୍ଡିଏ ପୋଷ୍ଟକାର୍ଡ ଓ ଦଶଟି ଟଙ୍କା ମନିଅର୍ଡ଼ର୍‌ରେ ପାଇଲି । ଶରତ୍‌ବାବୁ ଚିଠିରେ ଲେଖିଥିଲେ ଯେ, ଦଶ ଟଙ୍କା ଅବଶ୍ୟ ଏ ନାଟିକାର ମୂଲ୍ୟ ନୁହେଁ । କିନ୍ତୁ ତାଙ୍କ ପକ୍ଷରେ ଅଧିକ ଦେବା ସେକାଳରେ ସମ୍ଭବ ହେବ ନାହିଁ । ଏ ବହି ବା ମୋର ଅନ୍ୟାନ୍ୟ ବହିରୁ ମୋର କି ଅର୍ଥିକ ଲାଭ ହୋଇଛି ମୁଁ କହିପାରିବି ନାହିଁ । କିନ୍ତୁ ଶରତ୍‌ବାବୁଙ୍କ ସେହି ଦଶ ଟଙ୍କାର ମୂଲ୍ୟ ମୁଁ ଭୁଲିପାରିବି ନାହିଁ । ଏଯାବତ୍ ତାହା ହିଁ ଏ ଜୀବନର ଶ୍ରେଷ୍ଠ ସାହିତ୍ୟିକ ପୁରସ୍କାର । ଶରତ୍‌ବାବୁ ବହିଟିକୁ ପରିପାଟିତ କରି ଛପାଇଥିଲେ ମଧ୍ୟ, ଏବେ ମୋର ବିବାହ ଯାହାବେଳରୁ ଛପା ବହିଟି ମୋର ହସ୍ତଗତ ହୋଇଥିଲା । ମୋର ଏ ସବୁ ସୁଖମୟ ସ୍ମୃତି ଯେ ଏ ବହିଟି ସଙ୍ଗେ ଜଡ଼ିତ, ସେଥିପାଇଁ ମୁଁ ଶ୍ରୀଯୁକ୍ତ ଶରତଚନ୍ଦ୍ର ମୁଖାର୍ଜୀଙ୍କ ନିକଟରେ କୃତଜ୍ଞ । ସେହି କୃତଜ୍ଞତା ସ୍ୱୀକାର କରି ଆନନ୍ଦ ଉପଭୋଗ କରିବା ପାଇଁ ହିଁ ଏଠି ଏହି ଘଟଣାଟୁକ ଲେଖି ଦେଲି ।

ନାଟିକାଟିର ବିଷୟବସ୍ତୁ ଉପରେ ମଧ୍ୟ କିଛି କହି ରଖେ । ପ୍ରଥମ ସଂସ୍କରଣର ଭୂମିକାରେ ଏହି ଅଲୌକିକ ଘଟଣାର ସମ୍ଭାବ୍ୟତା ନେଇ ମୁଁ କିଛି କହିଛି । କିନ୍ତୁ ସାକ୍ଷିଗୋପାଳ ଓ ଲକ୍ଷ୍ମୀର ଉପାଖ୍ୟାନ ଏକ ଉପଲକ୍ଷ ମାତ୍ର । ହିନ୍ଦୁ ଦେବଦେବୀର ମାହାତ୍ମ୍ୟ ବା ବୈଷ୍ଣବ ଭକ୍ତିମାର୍ଗର ପ୍ରଚାର ପାଇଁ ମୁଁ ଏ ନାଟିକା ଲେଖି ନ ଥିଲି । ମୁଁ ପ୍ରକୃତରେ ଲେଖିଥିଲି ମାନବର ମନସ୍ତତ୍ତ୍ୱର ଏକ ରହସ୍ୟମୟ ବିଭବକୁ ରୂପ ଦେବା ପାଇଁ । ସେହି ବିଭବଟି ହେଉଛି—ମନୁଷ୍ୟ-ଚିତ୍ତ ଯେ ବେଳେବେଳେ ଉନ୍ମନା ହୋଇ ଉଠେ, ଯାହା ପ୍ରତ୍ୟକ୍ଷ, ଯାହା ଦୃଶ୍ୟ ସେଥିରେ ସନ୍ତୁଷ୍ଟ ନ ହୋଇ, ସେଥିପ୍ରତି ଆକୃଷ୍ଟ ନ ହୋଇ ଯାହା ଅଜ୍ଞାତ, ଯାହା ଅଦୃଷ୍ଟ, ଯାହା ଦୂର ଓ ଦୁରଧିଗମ୍ୟ, ତାହାର ପାଇଁ ଗୃହ ଓ ସମାଜର ସମସ୍ତ ନିର୍ଭରତା ଓ ସ୍ୱାଚ୍ଛନ୍ଦ୍ୟ ପରିତ୍ୟାଗ କରି ପଳାୟିତ କରିବା । ତରୁଣ ବୟସରେ ଏ ଭାବ ପ୍ରତ୍ୟେକଙ୍କ ଜୀବନରେ ପ୍ରାୟ ଉଣା-ଅଧିକ ଦେଖା ଦିଏ । ମୋର ମନେ ହୁଏ ମାନବ-ପ୍ରାଣରେ ଏହା ଉଚ୍ଚତର ଆଧ୍ୟାତ୍ମିକ ଜୀବନର ଅଙ୍କୁରୋଦ୍ଭେଦ । ସ୍ଥୂଳପ୍ରତି, ନିକଟପ୍ରତି, ପରିଚିତପ୍ରତି ବୀତସ୍ପୃହ ହୋଇ ସୂକ୍ଷ୍ମପ୍ରତି, ଦୂରପ୍ରତି, ଅପରିଚିତପ୍ରତି [illegible] ଆକର୍ଷଣ ମାନବ-ଚିତ୍ତରେ ଦେବତ୍ୱର କ୍ରିୟା । ସାଧାରଣତଃ ଏହି ଦେବାଗ୍ନି ବିନ୍ଦୁ ଥରେ ଜଳି ଉଠି ସମାଜ, କୁଟୁମ୍ବ ଓ ସଂସାରର ନାନା ଝଞ୍ଜାଳ, ନାନା ବାଧା, ନାନା ପ୍ରଲୋଭନ ଓ ବନ୍ଧନର ପାଉଁଶଗଦାତଳେ ପୁଣି ପୋତି ହୋଇ ଶୀତଳ ହୋଇଯାଏ । କିନ୍ତୁ ଭାଗ୍ୟବାନ୍ କେତେକ କୌଣସି ମତେ ତାକୁ ଲିଭିଯିବାକୁ ଦିଅନ୍ତି ନାହିଁ । ସେହି କେତେକ ହେଉଛନ୍ତି ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧି, ଅରବିନ୍ଦ, ପୁଣି ଦାନ୍ତେ, ଶେଲି, କାଳିଦାସ, ରବୀନ୍ଦ୍ର । ସେହିମାନେ ଅଜନ୍ତା ଓ କୋଣାର୍କର ସ୍ରଷ୍ଟା—ଯାହାର ଜୀବନର ଦୈନ୍ୟ ନିର୍ଯାତନାର ଆବରଣ ତଳେ ଯେଉଁମାନେ ନିଜର କଳ୍ପଲୋକକୁ

ପ୍ରାଣପଣେ ବଞ୍ଚାଇ ରଖିପାରିଛନ୍ତି ଏବଂ ସେହି ସୂତ୍ରରେ ମାନବୀୟ ଐତିହ୍ୟକୁ କରିପାରିଛନ୍ତି ଶ୍ରୀମନ୍ତ ଓ ମହିମାମୟ ।

ଲେଖକର ବୟସ ଯେତେବେଳେ ୧୩ । ୧୪ ବର୍ଷ ମାତ୍ର, ସେତେବେଳେ ତାର ମନୋଲୋକରେ ଏଇ ପ୍ରବନ୍ଧ ଯେ ଦେଖା ଦେଇଥିବ ତାହା ସ୍ୱାଭାବିକ, ଏ କଥା ପାଠକମାନେ ଧରିନେବେ ବୋଲି ଆଶା କରେଁ । ସେତିକିବେଳେ ଅନୁକରଣ୍ କରି ଉତ୍ସୁକ କୌଣସି ଏକ ଛୋଟ ନାଟକରେ ଏଇ ପ୍ରବନ୍ଧର ଅଂଶ ଯାଇ, ମୋର ନିଜର ମାନସିକ କ୍ରିୟା ପାଇଁ ମୁଁ ଯେପରି ସମର୍ଥନ ପାଇଲି । ତା'ପରେ ସମ୍ପୂର୍ଣ୍ଣ ଓଡ଼ିଆ ଭୂମିକାରେ ଏଇ ପ୍ରବନ୍ଧକୁ କପରି ରୂପ ଦିଆ ଯାଇପାରେ ଚିନ୍ତା କରୁ କରୁ ମୁଁ ଏହି ସାକ୍ଷିଗୋପାଳ-ଲକ୍ଷ୍ମୀ କିଂବଦନ୍ତୀକୁ ପରୀକ୍ଷା ପାଇଁ ଗ୍ରହଣ କରିନେଲି । ଲକ୍ଷ୍ମୀ ପ୍ରକୃତରେ ଏଠି ଜଣେ ପଣ୍ଡାର କନ୍ୟା ମାତ୍ର ବା ଦେବତା, ସାକ୍ଷିଗୋପାଳ ମନ୍ଦିରରେ ବିଜେ ଥିବା ସେହି କୃଷ୍ଣପ୍ରସ୍ତରର ମୂର୍ତ୍ତି ନୁହେଁ । ଏଠି ଲକ୍ଷ୍ମୀ ସାନ୍ତ ମାନବାତ୍ମା, ଦେବତା ହେଉଛି ସେହି ଅନନ୍ତ, ଅଜ୍ଞାତ, ସୁଦୂର, ବିରାଟର ଚିର ଆକର୍ଷଣ । ମୂଳପ୍ରବନ୍ଧ ହେଲା ଏହି । ପ୍ରବନ୍ଧ ଗୋଟିଏ ପରିଚିତ କିଂବଦନ୍ତୀକୁ ଆଶ୍ରୟ କରିଥିବାରୁ, ରଚନାକୁ ସେହି କିଂବଦନ୍ତୀର ରଙ୍ଗରେ ରଞ୍ଜିତ କରିବାକୁ ଚେଷ୍ଟା କରାଯାଇଛି ମାତ୍ର ।

'ପୂଜାରଣୀ' ଲେଖା ହେଲା ପର୍ଯ୍ୟନ୍ତ ମୁଁ କେବଳ ଗୋପବନ୍ଧୁଙ୍କ ସତ୍ୟବାଦୀ ସ୍କୁଲର ବକୁଳବନ ଦେଖିଥିଲି । ସାକ୍ଷିଗୋପାଳ-ବିଗ୍ରହ ଦେଖି ନ ଥିଲି । ଦେଖିବାର ବିଶେଷ ଆଗ୍ରହ କେବେହେଲେ ନ ଥିଲା । ଶୁଣିଥିଲି ମାତ୍ର ଯେ ଏହା ଏକ କମନୀୟ ମୂର୍ତ୍ତି । 'ପୂଜାରଣୀ' ରଚନାର ପ୍ରାୟ କୋଡ଼ିଏ ବର୍ଷ ପରେ ମୁଁ ଯେତେବେଳେ ଓଡ଼ିଶା ସରକାରଙ୍କ ପ୍ରୌଢ଼-ଶିକ୍ଷା ଅଫିସର୍ ଭାବରେ ସତ୍ୟବାଦୀ ଯାଇଥିଲି, ସେତିକିବେଳେ କୌତୂହଳବଶତଃ ମନ୍ଦିରଭିତରକୁ ଯାଇ ଗୋପାଳ

ଓ ଲକ୍ଷ୍ମୀଙ୍କ ମୂର୍ତ୍ତି ଦେଖିଥିଲି । ଦେଖି ବଡ଼ ନିରାଶ ହେଲି । ମୋର ମାନସିକ ପ୍ରତିକ୍ରିୟା କବି ୱାର୍ଡସ୍‌ୱାର୍ଥଙ୍କ ଭାଷାରେ ଡିଜେକ୍ଟେଡ୍ ଓ ଭାଷାରେ ଅନ୍‌ଡିଜେକ୍ଟେଡ୍ ପରି ହେଲା । କିନ୍ତୁ ଯେହେତୁ ମନ୍ଦିରସ୍ଥ ବିଗ୍ରହ ଏହି ନାଟିକାର ପ୍ରକୃତ ନାୟକ-ନାୟିକା ନୁହନ୍ତି, ତେଣୁ ମୋର ଅବଶୋଷର କାରଣ ନ ଥିଲା ।

'ପୂଜାରିଣୀ' କେଉଁ କେଉଁଠି ଅଭିନୀତ ହୋଇଥିବ ମୁଁ ଜାଣେ ନା । କିନ୍ତୁ ପୁରୀ ଓ ସମ୍ବଲପୁରର ସରକାରୀ ବାଳିକା ହାଇସ୍କୁଲର ଛାତ୍ରୀମାନେ ଏହାର ଯେଉଁ ଅଭିନୟ କରିଥିଲେ ତାହା ମୁଁ ନିଜେ ଦେଖିଛି । ସମ୍ବଲପୁରରେ ଏହାର ଅଭିନୟବେଳେ 'ପୂଜାରିଣୀ'କୁ ନୃତ୍ୟ-ନାଟିକା କରିବା ପାଇଁ ନୃତ୍ୟର ପାଣ୍ଡୁ:ତ୍ ଭୂମିକା ଭାବରେ ମଝିରେ ଠାଏ ଦି'ଠାରେ ଅଳ୍ପ କିଛି ଯୋଗ କରିଦେବାକୁ ହୋଇଥିଲା । ପରେ ଯେଉଁମାନେ ଏହାକୁ ନୃତ୍ୟ-ନାଟିକା ରୂପେ ଅଭିନୀତ କରିବେ, ସେମାନଙ୍କ ସୁବିଧା ପାଇଁ ସେହି ଯୋଡ଼ା ଅଂଶତକ ଏହି ସଂସ୍କରଣରେ ଦିଆଗଲା । କିନ୍ତୁ ମୂଳ କାବ୍ୟ-ନାଟିକାକୁ ପୂର୍ବେ ଯେମନ୍ତ ଥିଲା ସେହିପରି ଅକ୍ଷୁଣ୍ଣ ରଖିବା ପାଇଁ ନୂତନ ଯୋଡ଼ା ଅଂଶକୁ [ ] ବନ୍ଧନୀଭିତରେ ରଖାଯାଇଛି ।

ସମ୍ବଲପୁର
୩ । ୧୦ । ୧୯୫୩ } ମାୟାଧର ମାନସିଂହ

# ୧

ସତ୍ୟବାଦୀର ବକୁଳବନ । ଜ୍ୟୋସ୍ନାରାତ୍ରି । ଏକ ବକୁଳବୃକ୍ଷତଳେ
ଦେବତା ସାକ୍ଷିଗୋପାଳ ଉପବିଷ୍ଟ ଓ ବେଣୁବାଦନରତ ।
ଦେବତାଙ୍କର ଜାନୁକୁ ଉପାଧାନ କରି ଦ୍ୱିଜକନ୍ୟା ଲକ୍ଷ୍ମୀ ଶୟାନା ।
ଦେବତା ବେଣୁବାଦନ ସମାପ୍ତ କଲେ ।

## ଦେବତା

ମଧୁର ଏ ଜ୍ୟୋସ୍ନାରାତି ! ଶୋଇ କି ପଡ଼ିଲ ?
ଆଗୋ ଲକ୍ଷ୍ମି, ଆଗୋ ଲକ୍ଷ୍ମି, ଚନ୍ଦ୍ରିକା-ସୁନ୍ଦର
ଦେଖ ଏ ବକୁଳବନ । ଆଲୋକ, ଅନ୍ଧାର
ଘନ-ବନସ୍ପତି-ମୂଳେ ଛନ୍ଦିତ-ବନ୍ଧାର
ପରେ ଶ୍ୟାମ ଘାସ ପରେ । ମନ୍ଦ ସମୀରଣେ

କୋମଳ ବକୁଳଗନ୍ଧ ଭ୍ରମେ ବନାଙ୍ଗନେ
ମତ୍ତ କର ଇନ୍ଦ୍ରପୁରେ । ପ୍ରଫୁଲ୍ଲ ବକୁଳ
ବୃନ୍ତ ତେଜ ଗଣି ଗଣି ଏ ବନ-ବଧୂର
ବକ୍ଷପରେ କରୁଛନ୍ତି ଦେହ-ବିସର୍ଜ୍ଜନ,
ତେଣୁ ଦେଖ ବନତଳ କୁସୁମ-ଆଚ୍ଛନ୍ନ ।
ଏଇ ପୁଣି ତୁମର ଏ ଶୁଭ୍ର ଭାଲ-ପଟେ
ବୃନ୍ତ-ଚ୍ୟୁତ ପୁଷ୍ପ ଏକ ! କାହା ଭାଗ୍ୟ ଘଟେ
ଏ କୁସୁମ ସର ଏଡ଼େ ମଧୁର ପତନ !
ନେଲ କାଢ଼ି ପୁଷ୍ପଟୋକି !—ମଦଗନ୍ଧ-ଷରଣ
ପିଚ୍ଛିଳ କରିଛି ଗଣ୍ଡେ ।

ଏଇ ଶୁଣ ପିକ

ବନପ୍ରାନ୍ତେ ଝଙ୍କାରିତ କର ନମିଷେକ
ମାରବଲ୍ଲ ନିଜ ମାଢ଼େ । ଉଦ୍‌ଗ୍ରୀବ-ସ୍ୱରେ
ବଛିନ୍ନା ଚକୋର-ଜାୟା ଝଲସେ ଗଣ୍ଡରେ
ନଶାର ଝରଦ-ଛାପେ । ଲକ୍ଷ୍ମି, ଉଠ ସଖି,
ମୁଁ ଯେ ଖାଲି କଥା କହେ—

**ଲକ୍ଷ୍ମୀ**

ପଦେ ଗଣ୍ଡ ରଖି

ତୁମର ମୁରଲୀ ଶୁଣି ତନ୍ଦ୍ରା ଥିଲା ଆସି ।

ନିଦ୍ରା-ଜାଗରଣ-ମିଶ୍ର; ମନେ ହେଲା ଭାସି
ଯାଉଛି ମୁଁ କେଉଁ ଦେଶେ—ଲକ୍ଷ ଲକ୍ଷ ତାରା,
ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ ସଙ୍ଗି ଆଲୋକର ଧାରା
ଢାଳୁଛନ୍ତି ଅବିରଳ; ଆଲୋକ-ଉଜ୍ଜ୍ୱଳ
ସେ ଭୁବନେ ଭ୍ରମୁଛନ୍ତି ଜୀବ ଆଲୋକର ।
ସକଳ ଆଲୋକ-ପ୍ରାଣୀ—ଲକ୍ଷ ଶତ ଶତ
ଚଳିଛନ୍ତି ଏକ ଦିଗେ—ରଜତ ପର୍ବତ
ପଥ-ପ୍ରାନ୍ତେ ଅଛି ଉଚ୍ଚ, ସେହି ଗିରି ପରେ ।
ତୁଷାରଧବଳ ଘନ ମେଘମାଳତଳେ
କନକ-ମନ୍ଦିର ମଧ୍ୟେ ଦେବତା ବିରାଜେ;
ବିଦ୍ୟୁତର କଷାଘାତେ ମେଘ ମନ୍ଦ୍ର ବାଜେ
ଦେବତାର ପୂଜାବେଳେ । ସେହି ପଥ ଧରି
ମୁହିଁ ଗୋ ଚଳିଲି ଯାତ୍ରି-ପଦ ଅନୁସରି
ସେ ମନ୍ଦିରେ । କିନ୍ତୁ ବନ୍ଧୁ, ଦେଖିଲି ତାହାରେ ?
ତୁମ ଯେ ସେଠାରେ ସ୍ୱାମି ! ନୀଳଚନ୍ଦ୍ରକାରେ
ମଣ୍ଡିତ ଏପରି ଭାଲ, ଏହି ପୀତ ବାସ,
ଏହି ବେଣୁ, ରକ୍ତାଧରେ ଏହି ମଧୁହାସ—
ଚମକିଲି ଦେଖି ମୁହିଁ ! ହସି ନଟବର,
ମୋର ନାମ ଧରି ସ୍ନେହେ ଧରିଲ ମୋ କର,
ସହସା ମୋ ତନ୍ଦ୍ରା ଗଲା !—

ଦେବତା

ସ୍ୱପ୍ନମାତ୍ର ଜାଣ,
କହୁ ସେ ନୂତନ, ସଖି, ମନର ଉଆଣ ।
ଚନ୍ଦ୍ରାପୂର୍ବେ ମୁଁ ଯେ ଏଇ ଆକାଶେ ଅନାଇ
ଦେଖିଥିଲି ଗୋଟି ଗୋଟି ଜ୍ୟୋତିଷ୍କ ଚହ୍ଲାଇ;
ମେଷ, ବୃଷ, ବୃହସ୍ପତି, ଶୁକ୍ର ଆଦି କରି
ନକ୍ଷତ୍ରେ ସ୍ମୃତି ତାର, ବୁଝି ଥିବ ଧରି ।
ବଡ଼ ଲୋଭ ହେଲା କହୁ । କ୍ଷଣକେ ଆସିଲ
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ଭୂମି ।

ଲକ୍ଷ୍ମୀ

ଆଚ୍ଛା ତ କହିଲ !
ତୁମେ କ'ଣ ଭୂମି ନାହିଁ ? କହୁଛନ୍ତି ଜନେ
ତୁମେ ପୁଣି ଅଟ ରାଜା ଭୁବନେ ଭୁବନେ ।
ତୁମ ଅଙ୍ଗବଳେ ଚନ୍ଦ୍ର ସୂର୍ଯ୍ୟ ଦୁଇ ଭାଇ
ଭ୍ରମୁଛନ୍ତି ଅବାରିତ; ତୁମ ଆଜ୍ଞା ପାଇ
ବାଲୁକାର ବନ୍ଧ ଡେଇଁ ନ ଆସେ ବାରିଧି;
ତୁମେ ସୃଷ୍ଟିକର୍ତ୍ତା, ତୁମେ ଅଟ ମହାବିଧି,
ତୁମେ ପୁଣି ଚଳାଉଛ ନିଖିଳ ଜଗତ,
ଲୋମେ ଲୋମେ ପୁଣି ତବ ରାଜେ ଶତ ଶତ
ବ୍ରହ୍ମାଣ୍ଡ, କହନ୍ତି ନନା । ମୋହର ବିଶ୍ୱାସ

ନ ଦୁଃଖଇ ତଳେ ଏଥି । କହ ପୀତବାସ
କହ ମତେ ସତ୍ୟକଥା—ତୁମେ କଷ୍ଟ ଏବେ ?

### ଦେବତା

ତୁମର କହ ତ ଆଗେ କ ଦୁଃଖ ପଇଲେ !

### ଲକ୍ଷ୍ମୀ

ମୁଁ ଜାଣେ ତୁମର ଖାଲି ପ୍ରିୟ ବୋଲି ମମ,
ନାହିଁ ମୋର ଏ ସଂସାରେ ପ୍ରିୟ ତବ ସମ
କେବଳ ଜଣେ ଆଜ ଶ୍ୟାମ ! ମନ୍ଦିର ଦେବତା
ହୋଇ ତୁମେ ପୂଜା ପାଅ; ମୁହିଁ ମୋ ମମତା
ତୁମ ପଦେ ଦେଲି ତବ ଲକ୍ଷ ଭକ୍ତ ପରି,
କରୁଣା-ବାରିଧି, ଅଧୀନାରେ ଦୟା କରି,
ପ୍ରସ୍ତର-ପ୍ରତିମା ତୁମେ ପ୍ରିୟରୂପ ଧରି
ଖେଳା କର ମୋହ ସାଥେ ।

### ଦେବତା

ସେହି ଲକ୍ଷ୍ମି, ସତ—
ନୁହେ ମୁଁ ସଂସାର-କର୍ତ୍ତା, ବିପୁଳ, ମହତ ।
ଜାଣ ମତେ ଖାଲି ତୁମ ପ୍ରଣୟ ଭିଖାରୀ ।

### ଲକ୍ଷ୍ମୀ

ସେନେହ-ଭଜନ ଆଜ କ ମୁରଲୀଧାରି,

ନାହାନ୍ତ ତୁମର କେହ୍ବ ? ନ ଥିଲେ ବା କେହ୍ବ ?
କେଉଁ ଗୁଣେ ଅଧୀନାରେ ହେଲ ହେ ସେନେହ୍ବ ?
କାହ୍ନିଁପାଇଁ ଏତେ ଦୟା ?

## ଦେବତା

ଶୁଣ ଲକ୍ଷ୍ମି ମୋର
ମୋହର ଚରଣ ତେବେ । ପ୍ରଣୟ-ବନ୍ଧେର
ନିତ୍ୟ ମୁହିଁ କାଟେ କାଳ । ଏଇ ଯେ ମନ୍ଦରେ
ଲକ୍ଷ ଲକ୍ଷ ଭକ୍ତଜନ ଉଚିତ ବିଧିରେ
ନିତ୍ୟ ମୋର କରୁଥାନ୍ତି ଷୋଡ଼ଶ ଅର୍ଚ୍ଚନା,
ଏଥିରେ କି ତୁଷ୍ଟ ମୁହିଁ ? ଅନ୍ତର-ବେଦନା
ଶମେ ଖାଲି କେବେ ଯେବେ ଲକ୍ଷ ଭକ୍ତଜନେ
ଆସେ କେହ୍ବ ଅନ୍ତର୍ଯ୍ୟାମୀ ବନ୍ଧୁ ମମ ଜଣେ,
ନୟନେ ଆନନ୍ଦବାରି, ମୁଖେ ମୋର ନାମ,
ହୃଦୟେ ଯାଚନା ମୋର ପ୍ରଣୟ ନିଷ୍କାମ,
ପଛେ ରଖି ପ୍ରପଞ୍ଚର ତ୍ୟକ୍ତ ମାୟା-ମୋହ
ପୁତ୍ରକନ୍ୟା, ନାରୀନର, କାଞ୍ଚନ-ସନ୍ଦୋହ,
ପଥର ଭିଖାରି ଖାଲି ମୋର ପ୍ରୀତି ଲାଗି,
ସେଇ ଶମେ କ୍ଷୁଧା ମୋର । ବର-ଅନୁରାଗୀ
ଦାସରୂପେ ଲଭେ ମତେ । ପ୍ରେମ ଲାଗି ତାର

ସତେ ମୁଁ ଭୁଲିନା, ଅଭିମାନ ଅହଙ୍କାର
ଭୁଞ୍ଜି କରି ତାହା ଲାଗି । ପ୍ରଣୟ-କ୍ଷୁଧିତ
ଚିରଦିନ ପ୍ରାଣ ମୋର । ଉତ୍କଣ୍ଠ ମୋ ଚିତ୍ତ
ରହିଥାଏ ଚାହିଁ କେବେ ଆସିବ କେ ପ୍ରିୟ,
ସଖା ବୋଲି ଡାକି ମତେ 'ମୋରେ ପ୍ରେମ ଦିଅ'
କହିବ ନୟନ-ଠାରେ ।

ସେ ଦିନ ପ୍ରଥମେ
ମୋ ମନ୍ଦିରେ ଆଗମନ କଲ ଲକ୍ଷ୍ମି, ତୁମେ
ବୃଦ୍ଧ ପିତା ଗହଣରେ, ସହସା ମୋ ଚିତ୍ତ
ଚମକି ଉଠିଲା କ୍ଷଣେ; ଶୟନ-ଉତ୍ଥିତ
ସମ ମୁଁ ଭାବିଲି ନିଜେ, ମନେ ହେଲା ସତେ
ଯୁଗ ଯୁଗ ପରିଚିତ ବନ୍ଧୁ ମୋ ପୁରତେ
ସହସା ହୋଇଲା ଉଭା, ବହୁଦିନ ଶେଷେ !
ନିର୍ମଳ ହୃଦୟେ, କ୍ଷୁଦ୍ର ପୂଜାରିଣୀ ବେଶେ
ମାଳା ରଖି ପଦେ ମୋର, କ୍ଷୁଦ୍ର କର ଦୁଇ
ଏକ କରି, ମଥା ନୋଇଁ ଶେଷେ ଭୂମି ଛୁଇଁ
ପୁଣି ଯେବେ ନିର୍ନିମେଷେ ଚାହିଁଲ ମୋ ମୁଖେ,
ପ୍ରସ୍ତରଶରୀର ମୋର ମର୍ମରିଲା ସୁଖେ;
ଉତ୍କଣ୍ଠ ହୋଇଲା ଚିତ୍ତ ଶୁଣିବାକୁ ବାଣୀ,
ଡାକିବାକୁ ସଖୀ ବୋଲି ।—

# ଲକ୍ଷ୍ମୀ

ଜାଣେ ଜାହାଣୀ !

ମୋର ସବୁ ମନେ ଅଛି ! ଦେଖିଲି ପ୍ରଥମେ
ଯେବେ ହେ ମନ୍ଦିରେ ତବ ମୂରଲୀରେ; ତୁମେ
ଲାଗିଲ ଯେପରି ମୋର ଚିହ୍ନାଲୋକ ପରି
ହୋଇଅଛି ପରିଚୟ ବହୁ ଦିନ ଧରି,
ବହୁତ ଦିନର ବନ୍ଧୁ ! ହୋଇ ନାହିଁ କଥା
ବହୁ ଦିନୁଁ, ତେଣୁ ଦେଖି ଉଠିଲା ମମତା
ସହସା ଉଚ୍ଛଳ ହୋଇ ! କିନ୍ତୁ ତୁମ କଥା
ଶୁଣୁଥାଇ ନିତ୍ୟ ଘରେ; ଶାସ୍ତ୍ରର ବାରତା
ନନା ମତେ ସନ୍ଧ୍ୟାକାଳେ ଶୁଣାନ୍ତି ବସାଇ,
ତାଙ୍କ ମୁଖେ ତୁମ କଥା ନିତ୍ୟ ଶୁଣୁଥାଇ ।
ବୃନ୍ଦାବନେ ଥିଲ ତୁମେ, ରାଧା ବୋଲି ତବ
ପ୍ରଣୟିନୀ ଥିଲେ କେହି, ମଧୁ ଅନୁଭବ
ଘଟିଛି ତୁମର ତହିଁ—ରାଧା ଲାଗି ତୁମେ
ଅପରର ପଦ ଧରି କାନ୍ଦିଛ ସରମେ,
ରାଧାର ଚରଣ ଧରି ମାଗିଅଛ କ୍ଷମା;
ସତ୍ୟ ସବୁ ଏ କାହାଣୀ ?

# ଦେବତା

ମିଥ୍ୟା ନୁହେ ଜେମା ।

## ଲକ୍ଷ୍ମୀ

ସତ୍ୟ ବୋଲ ମଣି ସବୁ, ଶୁଣି ସେ ସଙ୍ଗୀତ
ଅନ୍ତରେ ଅସୀମ ଭକ୍ତି ହେଲା ତୁମପ୍ରତି ।
ଅନ୍ତରେ ଭାବିଲି ଖାଲି ମୁଁ ହେଲେ ରାଧିକା
ହୋଇଥାନ୍ତି; କୃଷ୍ଣଲାଗି ହୋଇ ପ୍ରାଣ-ହରା
ଘର ଛାଡ଼ି ଯାନ୍ତି ଚାଲି । କିନ୍ତୁ ପୀତବାସ,
କାହାନ୍ତି ରାଧିକା ତବ ? କାହିଁ ସେହି ରାସ
ଶ୍ରଦ୍ଧାବିଷ୍ଟ-ଗୋପୀ ମେଳେ ?

## ଦେବତା

ରାଧା ପ୍ରିୟତମା

ଲକ୍ଷ୍ମୀ ରୂପେ—

## ଲକ୍ଷ୍ମୀ

ଷ୍ଟୁଟ୍ କଲେ ନାହିଁ ଜାଣ କ୍ଷମା !
ଯିବ ଚାଲି ଗୃହେ ଫେରି !

## ଦେବତା

ଶୁଣ ସତ୍ୟକଥା,
ତୁମ ଦେହେ ଫୁଟିଅଛି ରାଧାର ମମତା ।
ବହୁ ବନ୍ଧୁ ରାଧିକାରେ ହରାଇଛି ସଖି,
ମଧୁର ମୋ ବୃନ୍ଦାବନ ପଛେ ମୋର ରଖି
ଆସିଲି ମୁଁ ସତ୍ୟ ରଖି ଏ ବକୁଳ ବନେ ।

ଯାପୁଥିଲି ଦିନ ମୋର ଅତି ନିକାଞ୍ଚନେ
ରାଧାଧ୍ୟାନ, ଗୋପୀଧ୍ୟାନ । ମୋର ଲାଗି ପୁଣି;
ରାଧା ତେଣେ ଦୂରେ ରହି ହେଉଥିଲା ଗୁଣି
ମୋର ସଙ୍ଗ । ଅବଶେଷେ ଶଙ୍ଖରେ ଭ୍ରମର
ଫେରିଛନ୍ତି ବଧି ରାଧା ଜାଣୁଛନ୍ତି ନିଜର ।
କିନ୍ତୁ ଲକ୍ଷ୍ମି, ସତେ କଣ ମତେ ଭୁଲି ଯାଅ ?
ସନ୍ଦେହ ଲାଗଇ ମତେ ନିତ୍ୟ ଆସୁଥାଅ
ପ୍ରଥମେ, କିନ୍ତୁ ଗୋ ଏବେ ଆସିବାକୁ ଥରେ
କେତେ ମୁଁ ମିନତି କରେ ।

## ଲକ୍ଷ୍ମୀ

ଲେଖ ରଖ ଘରେ

ଭ୍ରମର ସେ ଛଳ କଥା ! ଲଜ୍ଜା ମୋର ନାହିଁ ?
ଯୁବିଷ୍ଟ ମୁଁ ! ଘରେ ମୋର ପିତାମାତା ଥାଇ
ଘଟେ ଯଦି ବାର କାର ଗ୍ରାମେ ଅପଯଶ,
କେମନ୍ତେ କହିଲ ମୋର ହୋଇବ ସାହସ
ନିଶୀଥେ ହେବାକୁ ଘରୁ ବାହାର ଏ ବନେ ?
ତାପରେ ସେ ଥର ମୋର ଭାଙ୍ଗିଲ କଙ୍କଣେ ।
ଭ୍ରମର ଏ ବେଣୁଧାତେ, ଚନ୍ଦ୍ରିକା ସେବାର
ଅଙ୍ଗତେ ମୋ କବଟରେ ଗୁଞ୍ଜି, ହେଲା କାଳ
ଏବେ ପୁଣି ସେହି ଦିନ ଆମ ଘର ପଥେ'

ମିଳନ୍ତି ତୁମର ବେଣୁ ! ସାରା ଗ୍ରାମ ଉଠେ
ଲକ୍ଷ୍ମୀ ଆଜ ଦେବତାର ଗୋପନ ପ୍ରଣୟୁ !
ଅନ୍ତର ବନ୍ଧୁ ହେ, ସିନା ନାହିଁ ଧରେ ଅସୂ
ତୁମର ଏ କୃପା ଲଭି; ଇତରଙ୍କ ଆଗେ
କପଟ ଗର୍ବିଣୀ ହେବ ଏତ୍କ ଅନୁରାଗେ ?
ବଡ଼ ଲଜ୍ଜା ହୁଏ ମୋର ! ଲୋକମେଳେ ଥାଇ
ସରମେ ଏ ମନ୍ଦିରରେ ଯ୍ହିଁପାରେ ନାହିଁ ।
ତାଟରେ ଜାଣ ତ ତୁମେ ଦବାନ୍ଧତା ମତେ,
କିବା ଅପଯଶେ ମତେ ଟାଣି ରଖ ସତେ !
ଏଥିରେ କହୁଛ ପୁଣି ନ ଆସିଲି ବୋଲି ?
ଯାଏଁ ଏବେ ଗୃହେ ଫେରି; ଧର ମତେ ଛୋଳ,
ବଡ଼ ହିଁ ଅବଶ ଲାଗେ !

**ଦେବତା**

ଆଜ ଆଗମନ
କେବେ ହେବ ?

**ଲକ୍ଷ୍ମୀ**

ଆସ୍ପୃତରେ ନାହିଁ ନିଜ ମନ,
ତେଣୁ ପାରେ ନାହିଁ କହି । ସେଇ କଥା ଜନା
ଯା' ଅଙ୍ଗୁଳିଘାତେ ବାଜେ ମୂକ-ତନ୍ତ୍ର-ଘଣା
ନିରଞ୍ଜିତା ବୀଣାକାର । ହେ ବନ୍ଧୁ, ହେ ସଖା,

କେଉଁ ଅପରାଧେ ମମ ପ୍ରେମେ କର ଶଙ୍କା ?
ଅନ୍ତର ଜାଣେ ହେ ମୋର, ସଖା ଅନ୍ତର୍ଯାମି,
ତୁମ ପଦେ ଚିତ୍ତ ମୋର ନିତ୍ୟ ଅନୁଗାମୀ ।
ସକଳ ସମ୍ପଦ ମମ ହୃଦୟ ଦେଉଛି
ତୁମର ଏ ପଦ୍‌ପାଦେ । ଅହଙ୍କାର କିଛି
ଅଛି ଯଦି ସେ କେବଳ ତୁମ ଅନୁଗ୍ରହ
ସେହି ବଳେ ମତେ ବଳ; ଛାଡ଼ି ଜଗ ସହ
ରହିବାକୁ ସଖା ସ୍ୱର୍ଗ । ବଳେ ସେ ସାହସ
ଫିଙ୍ଗିବାକୁ ପୁଣି ଜଗ ମିନତି ସରସ ।
ସେସବୁ କ୍ଷମିବ ବନ୍ଧୁ—

## ଦେବତା

ଆସିଲେ କ୍ଷମିବ,
ନ ଆସିଲେ—

## ଲକ୍ଷ୍ମୀ

ଆଚ୍ଛା ତେବେ ନିଶ୍ଚୟ ଆସିବ ।
ପୂଜାନ୍ତଲେ ନିକଟରେ ଭଜନ ସମୟେ ।

## ଦେବତା

ଭଲ କଥା, ଶୁଣ ବନ୍ଧୁ ଦେଖି କସ କହେ—
ଏଥି କିଛି ନାହିଁ ସୁଖ । ତୁହେ ଯିବ ଫେରି ?

ଦେଖୁଛ ଚନ୍ଦ୍ରିକା କେଉଁ ଖେଳୁଅଛି କେଳ
ଏ ବନର ପତ୍ରେ ପତ୍ରେ ? ବୃକ୍ଷେ ବୃକ୍ଷେ ସଖି,
ଅଗଣ୍ୟ ବିହଗ ପ୍ରିୟାକଣ୍ଠେ କଣ୍ଠ ରଖି
ଘୁଞ୍ଚୁଛ, କି ମୁଗ୍‌ଧ ସୁଖ ଖେଳୁଛନ୍ତି ପ୍ରାଣେ ?
କୁସୁମର ଗନ୍ଧ, ଯାହା ଲଭୁଛ ଆଘ୍ରାଣେ,
ତା' ଲଭି ଏ ଶୀତବାୟୁ ସ୍ଫୀତ ହୋଇ ଉଠେ
ଦେଖୁଛ ତା' ଲକ୍ଷ୍ମି ତୁମେ ? ଶାଖେ ଶାଖେ ଫୁଟେ
ଅସଂଖ୍ୟ କୁସୁମ କାହିଁ ? କା ଲାଗି ଚନ୍ଦ୍ରିକା ?
କାହାଲାଗି ମଧୁଗନ୍ଧି ? ହେ ଅଭିସାରିକା,
କେଉଁ ଲାଭେ ଗୃହ ଆସି ଗୃହେ ଯିବ ଫେରି ?
କେ ଦେଖିବ ଚନ୍ଦ୍ରିକା ଓ ଧରଣୀର କେଳି ?
ରହ ଲକ୍ଷ୍ମି, ଆଜ ଦଣ୍ଡେ । କହ ଆଜ କଥା ।
ଜ୍ୟୋସ୍ନାତଳେ ନତ କରି ସରମିତ ମଥା
କହ ପୁଣି କେତେମତେ ଭଲ ପାଅ ମୋତେ;
ଯେତେହେଁ କହିଲେ ମନେ ଶଙ୍କା ଲାଗେ ସତେ
ତୁମେ ମତେ ମନ ଯୋଖୁ ଭଲ ନାହିଁ ପାଅ !

## ଲକ୍ଷ୍ମୀ

ବନ୍ଧୁ ମୋର, ସଖୁ ମୋର, କି କଥା ଶୁଣାଅ ।
କାହିଁକି ସନ୍ଦେହ ଲାଗେ ? ମଣିଯାଏଁ କନା !
କେମନ୍ତେ ମୁଁ ଜଣାଇବି ତୁମ ପଦେ କଣା

ମୋର ଏ ଶରୀର ମନ ? କେ ଅଛି ସୁନ୍ଦର
ତୁମ ପର ? କେବା ନିଜ ବାନ୍ଧବ ଜନର
ତୋଷ ପାଇଁ ତୁମ ପଣ ନିଜେ ଯାଏ ଭୁଲି ?
ଘିନାଘିନା ମୁହିଁ ମାତ୍ର ଜନପଥ ଧୂଳି ।
କିବା ଅହଙ୍କାର ମୋର ଅଛି ପ୍ରିୟ; କହ
ତୁମର କରୁଣା ବିନା ? ପ୍ରାଣେ ଅହରହ
ତୁମ ଲାଗି ଭୋଗେ ଯାହା, ନାରୀ-କଣ୍ଠ ଦେଇ
ସମରରେ ନାହିଁ ଫୁଟେ । ବିଶ୍ୱେ ନାହିଁ କେହି
ପ୍ରିୟ ମୋର ତୁମ ବିନା । ସଙ୍ଗସୁଖ ପାଇଁ
ଏ ମୋର ସକଳ ଆତ୍ମା ନୃତ୍ୟ କରୁଥାଇ
ଅହରହ, ଅହରହ । ସଜଳ ମିଳନେ
ବିରହ ଅଶାନ୍ତ ମୋର ରହିଛି ଜୀବନେ ।

## ଦେବତା

ପ୍ରେମ ସଦା ଶଙ୍କାକୁଳ; ଏଣୁ ଏ ସନ୍ଦେହ ।
କ୍ଷମା କର ମତେ ସଖି ! ଏବେ ଯିବ ଖେଦ ?

## ଲକ୍ଷ୍ମୀ

କର କ୍ରୀଡ଼ା, ନାହିଁ ଯିବ । ଘ୍ରାଣେ ଭସ୍ମ ଖାଲି,
ଯଜ୍ଞ ଜାଣେ ତେଜ ରେବେ ପୁଣି କଷ୍ଟେ ଜାଳି
ଗ୍ରାମପାଳ ଦେବ ହଠା । ମତେ ନଟବର,

ଜାଣି ଜାଣି ମତେ, ଦୁଷ୍ଟ, ପରମିତ କର ?
ବଡ଼ ଦୁଷ୍ଟ !

## ଦେବତା

ମୁକ୍ତାବନ୍ଧ ନୟନେ ତୁମର,
ଘାଟଳ ବଦନ-ଶୋଭା, କମ୍ପିତ ଅଧର
ଦେଖିବାକୁ ଲାଗେ ମୋର ସୁଖ ଅତି ପ୍ରାଣେ ।

## ଲକ୍ଷ୍ମୀ

ଆଜ ଥରେ କର ପଦ, ଜାଣ, ମୁହିଁ ଜାଣେ
କେମନ୍ତେ ଶୁଝିବ ଋଣ !

## ଦେବତା

କଙ୍କଣ ଆଘାତେ
ଏକ କର ଦେବ କରେ। ଏହୁ ଭୂମି ସାଥେ
ମୋର ଏ ମନର ସଖି ?

## ଲକ୍ଷ୍ମୀ

ଜାଣିବ ସୁନ୍ଦର,
ମୁରଲୀ ବଜାଅ ଏବେ, ଶୁଣେ ବଂଶୀଧର !
ଦେବତା ବଂଶୀ ବଜାଇବାକୁ ଲାଗିଲେ

## ଦେବତା

ବଜାଇବ, ଶୁଣାଇବ ଅନ୍ତର-ବ୍ୟଥିତ
ମୋର ଏହି ବେଣୁସ୍ୱନେ, ହୃଦୟ ମନ୍ଥିତ
ତବ କର୍ଣ୍ଣପାରେ ଯଦ୍ଧ ମୋ ଲଗି କାନ୍ଦୁଛେ !
ସେ ସ୍ୱନେ ଶୁଣିବ ମୋର ଅଶ୍ରୁ-ଦଗ୍ଧ-ଶବ୍ଦେ ।
ତୁମେ କାନୁ କହୁ ସମ୍ବୋଧନ ଦେବ ନାହିଁ ?
ସନମସ୍ତୁ ନାହିଁ କହୁ ? ଫାଙ୍କିରେ ଚଳାଇ ?

## ଲକ୍ଷ୍ମୀ

ଦେବତାର ସମ୍ମୁଖରେ ନୃତ୍ୟଭଙ୍ଗୀରେ ଠିଆ ହୋଇ

ଗାଅ ବନ୍ଧୁ, ତବ ବଷ ପିଇ ମୋ ଶ୍ରବଣେ
ସର୍ବସ୍ୱ ମୋ ସମର୍ପିବ ପରମ ନର୍ତ୍ତନେ ।

[ ଦେବତା ବଂଶୀ ବଜାଇଲେ ଓ ଲକ୍ଷ୍ମୀ ନୃତ୍ୟ କଲେ । ଦେବଦାସୀ ନୃତ୍ୟ । ନୃତ୍ୟ ଶେଷରେ ପଟ୍ଟ ପତନ । ]

## ୨

ଶରତ୍ ଅପରାହ୍ନ । ଲକ୍ଷ୍ମୀର ପିତା ବେଳେଶ୍ୱର ମହାପାତ୍ରଙ୍କ-କୁଟୀରାଙ୍ଗନରେ ମହାପାତ୍ରେ ଓ ତଦୀୟ ପତ୍ନୀ । ଅଙ୍ଗନରୁ ସାକ୍ଷିଗୋପାଳଙ୍କ ମନ୍ଦିର-ଚୂଡ଼ା ଦେଖା ଯାଉଅଛି ।

### ବେଳେଶ୍ୱର

ଶୁଣ ସଖି, କେତେ କାଳ ରଖିବା କନ୍ୟାରେ
ନିଜ ଘରେ କହ ଆଜ ? କହନ୍ତି କଥାରେ
ଘିଅ, ଝିଅ ରଖି ନୁହେଁ; ସ୍ନେହ ଅଛି ବୋଲି
ରଖିବା କି ଦେଲୁ ଯାହା ଆନ ହାତେ ତୋଳି
ଚିରକାଳ କୋଳେ ଧରି ? ଲାଗିଛି ସଂସାର,
ଯାଏ କନ୍ୟା ଶାଶୁଘର; ବ୍ୟଥିତ ହେବାର
ଲୋକହସା ସିନା ସଖି !

ଶୁଣୁଛି ମୁଁ ଆଜ
ଶଶୁରର ତର୍ଜନରେ ଗ୍ରାମ ପଡ଼େ ଭଜ !
କହୁଛ ଆସିବ ଏଥର ଭଦ୍ର ପୂର୍ଣ୍ଣିମାରେ,
ନେବ ବୋହୂ; ନ ହେଲେ ସେ ଗୁଣ୍ଡ
ବୋହୂଠାରେ
ଚିରକାଳ ଲାଗି ଆଶା, ଯିବ ଫେରି ପୁଣି;
କପାଳଁ କହିଲୁ ଏତେ ଗୋଳ କରି ଶୁଣି ?

## ପତ୍ନୀ

ସତ୍ୟ କଥା ସିନା ନାଥ, ଫେରାଇ ଫେରାଇ
ଲୋକ ତାଙ୍କ, କହିବାକୁ ମୁହଁ ଆଜି ନାହିଁ ।
ବୋଲୁଛନ୍ତି ଗ୍ରାମଲୋକେ 'ଏକାକୀ ଜଗତେ
ଏଇ ପାଇଥିଲ ଝିଅ, ରଖିଛ ପଣତେ,
ଗୁଡ଼ୁ ନାହିଁ ଶାଶୁଘର ! ଏତେ ସ୍ନେହ ଯତ୍ନ,
ଛଡ଼ା ଦେଲ କରି କପାଁ ? ବିଧାତା ସରଜ
ଦେଇଛି ଯା ପାଇଁ ଯାରେ, ସେ ସିନା ତାହାର,
ଏପରି କଥା ତ କାହିଁ ଶୁଣିନ ସଂସାର ?
ଶୁଣି ସେ ଚାହିଁଲ, ବୁକୁ ହୋଇଯାଏ ପାଣି,
ଉତ୍ତର ଦେବାକୁ ମୁଖେ ନ ଫୁଟଇ ବାଣୀ ।
ଦୋଷ ତ ଆମରି ନାଥ ! ଛଡ଼ା ହୋଇ ପିଲା
ଏତେ ଦିନଯାଏ ଶାଶୁଘର ନ ଦେଖିଲା;

ଥର ଥର ଲୋକ ପେଷି ଫେରିଲେ ଶଙ୍କରୁ,
ଘଗିବା ଵଚଷ କବା ?

କିନ୍ତୁ ସେ ମଧୁର
ମୁଖଟିକ କେମନ୍ତେ ମୁଁ ପାସୋରିବ ନାଥ !
ସେଇ କଥା ନିତ୍ୟ ଭାବେ; ସଞ୍ଜାଳି ଵନା ତ
କ୍ଷଣକେ ଅନ୍ଧାର ମୋତେ ଦିଶଇ ସଂସାର;
ଗଲେ ଗୁଳି, ଶୂନ୍ୟ ଗୃହେ କରି ହାହାକାର
କା' ମୁଖ ଅନାଇ ପ୍ରାଣ ବୋଧିବ କହ ତ ?
ପୁର ହେବ ଖାଲି । ମୋର ସ୍ନେହ-ପରବତ
ଯିବ ଗୁଳି । ଶୂନ୍ୟ ପୁରେ କଞ୍ଚିବ କେମନ ?
ଗୋଟାକୁ ଦୁଇଟା ବଧି—

(ଚଦନ)

## ବେଲେଶ୍ବର

ଦୋଷି ଭଗବାନେ
କି ଲାଭ କହିଲୁ, ସଖି ! ଭାଗ୍ୟହିଁ ସକଳ;
ପୂର୍ବ କର୍ମ ଅନୁସରି ପ୍ରାଣୀ ଫଳାଫଳ
ପାଇଥାଏ ଏ ଜଗତେ । ଶାସ୍ତ୍ରକଥା ଏହି
ଏଡ଼କ ପାଣବ ତା'ରେ ବଳବନ୍ତ କେହି ?
ଦେଇଛନ୍ତି ପୁଣ୍ୟ ଦେଖି ଏକଇ କଳକା,
ପୁତ୍ର ସେଇ, କନ୍ୟା ସେଇ, ସେ କୁଳପାଳିକା ।

ଯେତେ ଧନ ବଢ଼ିବାର ଥିଲା ଏ କୁଟୀରେ
ବଢ଼ିଲା, ଏବେ ସେ ପକ୍ଷୀ, ତା' ନିଜ ମନ୍ଦିରେ
ଉଡ଼ିଯିବ ଦେବାର ସୁନ୍ଦ କନ୍ୟା ତ ବେଶରେ
ପର-ଘର ପାଇଁ ଗଢ଼ା, ଲୁହ ଭେଜଦାରେ
ଫଳ କବା କହ ମତେ ? ଫଳ ହେବ ଯିନା
ଶଶୁର ତା' ଗଲେ ଫେରି, ସ୍ୱାମିସୁଖ ବିନା
ଚିରକାଳ ହେବ କନ୍ୟା ସେ ସର୍ଗୁ ବଞ୍ଚିତ !
ସେ ଦୁଃଖ କି ଆମ ସ୍ନେହେ ହେବ ଅପଚିତ ?
ସେକଥା ଭାବିଣ ଏବେ କର ଆୟୋଜନ
ଲକ୍ଷ୍ମୀର ପଦ୍ମ ପାଳି; କବା ପ୍ରୟୋଜନ
ଏ ଘରେ ତାହାର ଆଉ ?

## ପତ୍ନୀ

ଯିବ ସେ ଯେ ଘର
କି ଅବା ଜାଣିଲ ତା'ର ସନ୍ଧାନ ମୋହର !
ବର ବୋଲି ଯୋଡ଼ିଦେଲେ ଆଣି ବା ଯାହାକୁ
ଜାଣିଲ କି କେମନ୍ତେ ସେ ଏ ରତ୍ନମାଳାକୁ
କରିବ ଆଦର-ସ୍ନେହ ? ଶୁଣୁଛି ମୁଁ ଶାଶୁ
ବଡ଼ ଦୁର୍ଦ୍ଦଣ୍ଡ ପୁଣି । ଡାକମାର ହାତୁ,
କେ ଜାଣେ କି କଷ୍ଟ ପାଇ ସନ୍ତାନ ମୋହର
ହାତ ପଛେ ଆଖି ପୋଛୁ ହୋଇଣ ବିକଳ

ଅନ୍ତରେ 'ବୋଉଟଲ୍' ବୋଲି ଡାକିଲେ କି ନାଥ,
ଥିବ ମୂର୍ଚ୍ଛି ଯାଣେ ତା'ର ? ମୁଣ୍ଡେ ମାରି ହାତ
କୋଳେ ଧରି ଆଖି ଦେବ ପୋଛି ମୁଁ ପଣତେ ?
କି ଦୁଃଖ ସେ ! କି ବେଦନା ନ ପାଇବ ସତେ
ଧନ ମୋ'ର ପରପୂରେ ନିରାଶ୍ରିତା ପରି !

( ପୁଣି ବନ୍ଦନ )

## ବେଲେଶ୍ୱର

କାହିଁକି କାନ୍ଦୁଛ ପୁଣି ? ଲୀଳା ତ ଏପରି
ଲାଗିଛି ଜଗତସାରା । ନାରୀ-ଜନ୍ମ ପାଇ
'କିଏ କାହିଁ ଏ ବେଦନାରୁ ପାଇଅଛି ବାଦ ?
ନିଜ ଘର ତେଜି ଯିବ ଦୂର ପରଘରେ,
ମୁଣ୍ଡ ପାତି ନେବ ସବୁ ସକଳ ଜଞ୍ଜାଳେ,
ସଂସାରେ କରିବ ପୁତ୍ର କନ୍ୟା କରି ଜାତ,
ତାଙ୍କରି ଜଞ୍ଜାଳେ ନିଜ-ସୁଖ ଆତପାତ,
ଏଇ ତ ନାରୀର ଭାଗ୍ୟ ? ଆମ ଲାଗି କିବା
ସଂସାରେ ହୋଇବ ନୂଆ ?

## ପତ୍ନୀ

ସ୍ୱାମିଘର-ଯିବା
ଶୁଣିଲେ କନ୍ଦୁ ମୋ' ଧନ କାହିଁ ଗଡ଼ପାଏ !
ଜାଣ ତ ? ଜାଣି ନା ?—ଲକ୍ଷ୍ମୀ ହସି ଖେଳୁଥାଏ

ସଙ୍ଗମେଳେ, କେହ୍ନି ସାଥୀ ପରିହାସ ରସେ
କହିଲେ ସ୍ୱାମୀର କଥା, ହଷମ ହରସେ
ସଙ୍ଖାଳିର ଶୁଭ୍ରମୁହଁ ରକ୍ତ ହୋଇ ଉଠେ,
ବଚନ ନ ଫୁଟେ ମୁଖୁ, ହସ ମୁଖୁ ଛୁଟେ,
ପଳାଇବା ପାଇଁ ଉଠେ ସଜନୀଙ୍କ ପାଶୁ ।
କେତେ ଥର ଦେଖିଲଣି, ଶୁଣିଲଣି ସ୍ପଷ୍ଟୁଁ
ସାଥିଙ୍କର ପୁଣି ତାର, ଦେଖୁଛି ଯେପରି
ମାଆର ମୋ ଅଭିଳାଷ ନାହିଁ ତିଳ ସରି
ଯିବାପାଇଁ ଶାଶୁଘର । ଖବୃନ୍ଥ ସରମ ?
ନାହିଁ ଜାଣ, ଜନନୀ ମୁଁ ବୁଝିନ୍ତି ମରମ ।
ବାର ବାର ଦେଖିଲଣି, ଆସେ ଯେଉଁ ଦିନ
ଶାଶୁଘରୁ ଲୋକ ଡାକ—ତା'ର ତନୁ କ୍ଷୀଣ
ରାତି ଉଠେ ଜରତାପେ; ଅନ୍ନ ତେଜି ଧନ
ନିଶବଦେ ପଡ଼େ ଶୋକ; ପୁଚ୍ଛିଲେ କାରଣ
'ମାଆଲୋ, କାହିଁକି ଦେହ ହେଲା ଆଜ ତାତ ?'
ଖାଲି କହେ 'ଜାଣି ନାହିଁ—କିନ୍ତୁ ଏ ମୋ ଗୁପ୍ତ,
କପାଁ ବୋଉ, ଦମଦମ ପଡ଼େ ଲୋ ଏପରି ?'
'କାହିଁକି ଲୋ' 'କାହିଁକି ଲୋ' ବୋଲି କୋଳ କରି
ସଙ୍ଖାଳିରେ ଧରେ ଜାକ—

ଏଥିରେ କେସନେ
ଶାଶୁଘରେ ଦେବ ପେଲି କହିଲ ମୋ' ଧନେ ?

## ବେଲେଶ୍ୱର

କେମନ୍ତେ ବୁଝିବୁ ଆଜ କହିଲୁ ବାପୁାଣି ?
ବୃହାଁ ସେଇ ଦେଉଳରେ, ଅପବାଦ-ବାଣୀ
କେମନ୍ତେ ଉଠୁଛି ଗ୍ରାମେ ପୁଣି ପକା ମନେ;
କହ ତନ୍ତୁଁ ଘରେ କେନ୍ଦେ ରଖି ଘରଧନେ ?
ବୁଝିଲୁ ? ବୁଝିଲୁଟିକ ?

## ପତ୍ନୀ

ଘୋର ମିଥ୍ୟା କଥା !

ଲଗାନ୍ତି ମୋ' ଧନ ନାମେ କେତେ ନଷ୍ଟକଥା
ଅସହଣି ଗ୍ରାମ-ଲୋକେ । ସେସବୁକୁ ସତ
ମଣିବାରେ କି ଗରଜ ଅଛି ମୋ' କହ ତ !
ମୋ' ପିଲାରେ ମୁହିଁ ଜାଣେ !—ନାହିଁ ପାରେ କହି
ଦ'ପଦ ବଚନ ଗୁରୁଜନ ଆଗେ ରହି
ଲାଜକୁଳୀ ଲତା ମୋର ! ଘରେ ନାହିଁ ବଣ୍ଟି
ଶେଯ ଧରି ମତେ ଡାକେ ଶୋଇବାକୁ ନିତି,
ଭୟ ଲାଗେ ଘରେ ଏକା । ସାଙ୍ଗସାଥୀକେହି
ଟାଣେ ପଡେ ଦେଲେ କହି, ମୋ' ଲବଣୀ ଦେହି
ସଢ଼ିଯାଏ ଅପମାନେ, ଟପଟପ ନୀର
ବହିଯାଏ, ଦୁଇ ନେତ୍ରୁଁ—ସେ ପୁଣି ଗମ୍ଭୀର

ଗହେ କାହିଁ ଘର ଛାଡ଼ି ଝୁଗାଅନାବନେ
ବୁଲେ ଏକା; ବାନ୍ଧ ପୁଣି ଆପଣା ବସନେ
ଗୋପୀନାଥେ କରେ ଖେଳ ଚନ୍ଦ୍ରପକ୍ଷ ଗତେ,
ରତ୍ନଚୀର-କୂଳେ ପୁଣି ବୁଲେ ଧରି ସାଥେ
ଦେବତାରେ ଦବସରେ; ଅନାସୃଷ୍ଟି କଥା
ଶୁଣି କପାଁ ହୁଏ ଶୁଣେଁ ଭୁମ ମୁଣ୍ଡ-ବ୍ୟଥା !
ଘଟେ ଅବା ଏତେ ଲୀଳା କହ କେତେବେଳେ ?
ରଖିଛୁ ଧନରେ ମୋର ସଦା ଆଖିତଳେ,
ଛାଡ଼ି ନାହିଁ ପାରେ ରହି । ସଞ୍ଜ ଲଗୁଁ ଘରେ
ନାହିଁ ନାହିଁ କରୁ କରୁ ଭୁଞ୍ଜାଇ ଏ କରେ
ଯତନେ ଦଅଇ ଶୋଇ; ଘର-କାମ ସାରି
ଶୋଇବାକୁ ଆସି ଦେଖେଁ ନଦରେ ସଙ୍ଗାଳ
ପଡ଼ିଛୁ କନକ-ଲତା ପରି ଶେଯପରେ ।
ଦୀପ ରଖି ରୁଖାପରେ ମୁଖେ ଗୁହ୍ନିଁ ଥରେ
ଦୁଇ ଆଖି ପୂର୍ଣ୍ଣ କରି, ସାଉଁଳି ବଦନ,
ସାଉଁଳି ସର୍ବାଙ୍ଗ, କରି ଶିଥିଳ ବସନ
ଯତନ; ଧନରେ କୋଳେ ଆଣି ଭିଡ଼ି ଧୀରେଁ
ଶୋଇପଡ଼େଁ । ନଦଛଙ୍ଗେ ସକାଳ ହୋଇଲେ
ତା'ର ଡାକେ 'ବୋଉ କଲେ ଉଠିବୁ ନାହିଁକି ?
ନନା ଡାକୁଛନ୍ତି ପରା' !

କହ ମତେ ଦେଖି
କପର ପରତେ ଯିବ ଏ ଯେ ଅପବାଦେ ?
କାହିଁ ବେଳ ? କପାଳି ବା ଏତେ ଫରମାଦେ
ଯିବ ମୋର ଗଣ୍ଠି ଧନ ?

# ଡେଲେଶ୍ବର

ନାଗ-ଜନ୍ମ ହେଲେ
ଚୂଲ-ଧୂଆଁ ସଙ୍ଗେ ବୁଦ୍ଧି ଉଡ଼ଯାଏ ହେଲେ !
ହେବ ତାର ମାୟା ଭୂତ୍ଵ କ ଜାଣିବୁ କହ
ରହୁ ବା ସଙ୍ଗୀନ ତୋର ସାଥେ ଅହରହ ?
କେତେ ଦିନ ହେଲା ବଂଶେ ଶୁଣୁନ କ ମୂହିଁ
ଝୁପି ଝୁପି-ପଦପକା; ପୁଣି ଜନ ଦୁଇ
ଆସିବା-ଫେରିବା ନଡ୍ୟ ଗଣ୍ଡିର ନଶାରେ
ଏଇ ଆମ ଅଗଣାରେ ? ପନ୍ତ ବନଧାରେ
ଶୁଣୁନ କ ହସ-ଖେଳ, ରଙ୍ଗ-ନାଟ-ଲୀଳା
ଚୂପୁ-ଚୂପୁ ଘଟିବାର ? ଆଗ-ଦ୍ଵାର ଶିଳା
ଠୁଣୁ ଠୁଣୁ ବାଜିବାର ବଳା-ନାଦେ କାର
ଶୁଣୁନ କ ? ଶୁଣୁଛି ମୁଁ—ପିଶାଚ-ପ୍ରକାର
ଘର ମନେ, ଭୟେ ଥାଏ, କହି ନାହିଁ କାରେ ।
କନ୍ତୁ କେ ନ ଜାଣେ କହ, ସେ ଦିନ ଦୁଆରେ
ଯାଉଁ ପୂଜାଗ୍ନି କେତେ କନକ ମୂରଲି,

କେସନେ ମୟୂର-ପୁଚ୍ଛ ଖୋଜୁ ଶେଯ-ତଳେ
ଲକ୍ଷ୍ମୀର, ପାଇଲ ଅପା, ଏଥିରେ କ କହ
ଅବିଶ୍ୱାସ କର ହୁଏ ?

## ପତ୍ନୀ

ଥିର ହେବେ ଇହ
ଜାଣିଲ ଦେବତା ଯହ ଆସେ ଏ କୁଟୀରେ ।
ଅପବାଦ ହୋଇ କପାଁ ? ଆମେ ତ ବଧିରେ
ଅତି ଦୁଃଖୀଠାରୁ ଦୁଃଖୀ; ଏଥିରେ ଦେବତା
କୃପା ଯଦି କଲେ, ସେ ତ ଅତି ଭାଗ୍ୟ କଥା ।
ଲକ୍ଷ୍ମୀ ମୋ' ତାଙ୍କର ପିନା; ତାଙ୍କର ଇଚ୍ଛାରେ
ସର୍ଗ-ପ୍ରତିମା ଆସ ଆସିଛୁ ସଂସାରେ;
ତାଙ୍କର ଇଚ୍ଛାରେ ବେଳ ଉଠେ ବୁଡ଼େ ନିତି,
ଧର୍ମ ଅଛୁ ଜଗତରେ; ତାଙ୍କ ବିନା ଗତି
କାହିଁ କାର ? ମୋ ପିଲାରେ କଲେ ଯଦି ଆଖି
ଧନ୍ୟ ହେଲା ଗର୍ଭ ମୋର ।

## ବେଲେଶ୍ୱର

ଆହା, ସେ କଥା କ
ବୁଝିବେ ଅପର ଲୋକେ ? ପରଶ୍ରୀକାତର
କେତେକ କରିବେ ହିଂସା; ପରିହାସପର
ରଟିବେ କେତେକ ପୁଣି ଘୋର ଅପବାଦ,

ଛଳେ ଛାଳ କରି ଯେ ଗୋ ଘୋର ପରମାଦ
ଘଟାଇବେ କେତେବେଳେ; ଏତେ ହଟହଟା
କପାଇଁ କହିଲୁ ସଖି ? ବର-ଘର କଥା
ଅଛି ପୁଣି । ଏ ସମ୍ବାଦ ଶୁଣିଲେ ସେ କାନେ
ମନେ କରି ବୁଡ଼ିବ ମୁଁ କିବା ଅପମାନେ !
ଦେବତା ହେଲେ କି ହେଲା ? ବ୍ୟଭିଚାର ଏ ତ !
ଭୂଆସୁଣୀ ସଙ୍ଗେ ଏଇ ଲୁଚ-ଛପିର ଭେଟ !
ଯେ କଥା ଶଶୁର-ସ୍ୱାମୀ ନ ପାରିବେ ବୁଝି;
ଦେବତା ବୋଲି କି ନିଏ ଗୋ ଦେବେ ଆଖି ବୁଜି ?
ଏତେ ନଟ କିଏ ଶୁଣେଁ ? ଦୁଃଖୀ ଲୋକ ଆମେ,
ଆମ ଦୁଃଖେ ରହିଥାଉ ଲାଗି ଆମ କାମେ;
ପର ତୁଣ୍ଡେ ଆମ କଥା ଚଢ଼ିବାର କାହିଁ
ଶୁଣି ନାହୁଁ ଏତେ କାଳ; ନିଜ ଦୁଃଖେ ଥାଇ
ଏ ଭାଗ୍ୟ ତ କେବେହେଲେ କରିନୁ ଯାଚନା,
କପାଇଁ ଏ ଅନୁକମ୍ପା ? ତେଣୁ ମୋ ଭାବନା,
ଏ କେବଳ ଏ ଦୁଃଖୀରେ ଦେବାକୁ ଗଞ୍ଜଣା
ଦଶ ଜଣ ଆଖି ଆଗେ—

ଏଇ ଦେଖ, ଅନା,

ପୂଜାରି ଆସୁଛି ପୁଣି; ପୁଣି ହଜିଲ କି
ଦେଉଳରୁ ଆଉ କିଛି ?

(ପୂଜାରୀଙ୍କର ପ୍ରବେଶ)

ଆସିଲ କାହିଁକି ?

## ପୂଜାରୀ

ଜାଣିନା କି ? ଶ୍ରୀଜଗତଙ୍କ କନସୁ ଅଙ୍ଗୁଠି
ମୁଦ୍ରିକା ହରାଇଅଛି । ସାଉଁଟି ସାଉଁଟି
ଦୀପ ଧରି ବୃନ୍ଦ ଆସି ଖୋଜିଲେ ଅଶେଷ,
ପାଇଲେନି କେହୁ କାହିଁ—

## ବେଲେଶ୍ୱର

ମୁଁ କି ବରବେଶ
ଦେଖିବାକୁ ଆସିଛୁ ମୂଢ—ଧାଇଁଲ ଏଠାକୁ ?

## ପୂଜାରୀ

ନାହିଁ, ନାହିଁ—ଇଚ୍ଛା ଥିଲା ପରେ ପୁଚ୍ଛିବାକୁ
ଲକ୍ଷ୍ମୀଙ୍କେ—

## ପତ୍ନୀ

ଲକ୍ଷ୍ମୀ କି ମୋର ବୈରିଣୀ ଦିଶିଲା ?
ହଜୁଛି ଦେଉଳରୁ ଯାହା, ସୁନା ଅବା ଶିଳା
ଧାଉଁଛ ଏଠାକୁ ନିତ ?

**ପୂଜାରୀ**

ସେ କଥା ମାଉସି !
ମୁଖେ ଧର ନାହିଁ ଆସେ । କମ୍ବଳ ପାଡ଼ୁଷୀ
ଲକ୍ଷ୍ମୀ ଆଜ ଯାଇଥିଲ ଫୁଲମାଳ ଧର
ଦେଉଳକୁ ଖରବେଳେ—

**ପତ୍ନୀ**

ଢଅଁ ପୂଜା କର ?
ମିଥ୍ୟା କଥା, ମିଥ୍ୟା କଥା !

**ପୂଜାରୀ**

ମିଛ ନାହିଁ ଏଥି,
ବୁଝନା ଦେଖି ଗୋ ଠିକେ । ଡାକଆଣ ଏଠି
ଲକ୍ଷ୍ମୀରେ । ଅଛି ତ ଘରେ ?

**ପତ୍ନୀ**

ସକାଳୁ ଅଛି ସେ
ଘରେ ମୋର । ଲାଗିଅଛି ଘରଣୀ ପରି ସେ
ନିଜ କାର୍ଯ୍ୟେ । ଡାକେ ଦେଖି—ଲକ୍ଷ୍ମି—ଏ ସଖାଳ
(ନୀରବତା)
ଏଇ ଆସେ······
(ଲକ୍ଷ୍ମୀର ପ୍ରବେଶ)
ଯାଇଥିଲୁ 'ଲକ୍ଷ୍ମି ଫୁଲ ଧର
ଦେଉଳକୁ ଆଜ ?

## ଲକ୍ଷ୍ମୀ

(ମୁହଁ ପୋଛି)

ଯାଇଥିଲି ବ'ପଘରେ ।

## ପୂଜାରୀ

ହାତର ମୁଦ୍ରକା ନାହିଁ ଦେବତାଙ୍କ କରେ ।
ଜାଣୁ କହୁ ?

## ଲକ୍ଷ୍ମୀ

(ସଲଜ୍ଜ)

ଦେବତା କ ମାଗୁଛନ୍ତି ପୁଣି ?
ଏଇ ନିଅ ।

(ଅଙ୍ଗୁଢ଼ୋ ପ୍ରଦାନ)

## ପତ୍ନୀ

ମାଆ ମୋର, ଏ କି କଥା ଶୁଣି !

## ବେଲେଶ୍ୱର

ଏତିକରେ ଶେଷ ହେଉ ଜଞ୍ଜାଳ ତୁମର,
ହେ ଦେବତା !

## ପୂଜାରୀ

'ମୁହିଁ ପ୍ରଭୁ ମାତ୍ର ପରିଚର !

୩

ନଶୀଥ ରାତି । ବେଲେଣ୍ଟର ମହାପାତ୍ରଙ୍କ ବାତାୟନ ନିକଟରେ
ଦେବବ୍ରତ ସାକ୍ଷିଗୋପାଳ ଦଣ୍ଡାୟମାନ ।

**ଦେବବ୍ରତ**

( ଅନୁଚ୍ଚ ସ୍ୱରରେ )

ଲକ୍ଷ୍ମି, ଲକ୍ଷ୍ମି !

(ଗୀତବନ୍ତା)

ଲକ୍ଷ୍ମି, ଡାକେ ମୁହିଁ ସାଥୀତବ ।

(ଗୀତବନ୍ତା)

ଉଠ ବନ୍ଧୁ, ଆସ ବାତ୍ୟେ, ପାଏ ଅନୁଭବ
ତୋ’ ସାଥୀର;

(ଗୀତବନ୍ତା)

ଲକ୍ଷ୍ମି ମୋର, କହଁ। ଦେଉ ବ୍ୟଥା,
ଦୁଇ ବନ ସଙ୍ଗେ ତୋର ହୋଇ ନାହିଁ କଥା;

ନ ପାରେଣ ସହ୍ୱ ତେଣୁ ଅନ୍ତର-ବେଦନା
ଆସିଛୁ ମୁଁ; ବୁଝିଥାନ୍ତ କ ଅବମାନନା
ଦେଇଛୁ ତୋ' ପ୍ରାଣେ ମୁହିଁ; ତେଣୁ ମଧ୍ୟରେ
ଯାଇ ନାହୁଁ ଦୁଇ ଜନ—ଫେରାଅ ସଖି ରେ,
ଥରେ ଦେଲେ ବାତାୟନ, ଦେଖୁ ଥରେ ଆଖି
ମୁଖ ତୋର, ଧନ୍ୟ ହୁଏ ମୁହିଁ ଜନମାଖୀ ।
ଉଠ ଲକ୍ଷ୍ମୀ, କହ କଥା—

(ଗାରବତା)

ଏତେ ଡାକେ ତା'ର

ଭାଙ୍ଗୁ ନାହିଁ ନଦ ଆଜ ! ସାମାନ୍ୟପ୍ରହାର
କନକ-ବେଣୁରେ ଦେଲେ ବାତାୟନପରେ
ଅନ୍ୟ ଦନେ, ରାଜପଥେ ଠିଆ ହୁଏ ଖରେ;
ଆଜ ଏ' କ ବଡ଼ମ୍ବନା ?—ଲକ୍ଷ୍ମି, ସାଥୀ ମୋର,
ଏକମାତ୍ର ସାଥୀ ଗ୍ରାମେ—ଏକମାତ୍ର ତୋର
ଏ ପ୍ରାଣର; ଜାଣୁନ କ ଏଇ ଅଭିମାନ
ଦଏ କେତେ ବ୍ୟଥା ମତେ ? ଦେଲ ମୋର ରାଣ,
ଆସ ସଖି, ଉଠି ଦାଣ୍ତେ,

(ଗାରବତା)

କର ଯୋଡ଼ କର

ଡାକେ ପୁଣି । ଲକ୍ଷ୍ମି, ମତେ କହ ଥରେ କଥା;

(ଗାରବତା)

ଥାଅ ଲକ୍ଷ୍ମି, ଗର୍ବେ ତବ ଉଚ୍ଚ ଥାଉ ମଥା,
ଯାଏ ମୁହିଁ ନିଜ ପୁରେ ।

(ଗମନୋଦ୍ୟତ)

**ଲକ୍ଷ୍ମୀ**

(ସହସା ବାତାୟନ ଖୋଲି)

ଯାଅ ଧୂର୍ତ୍ତ ଶଠ !

ଲୋଡ଼ା ନାହିଁ ସାଥି ତବ କପଟ କପଟ !
ତୁମ ସଙ୍ଗ ପାଇ ମୋର ଗ୍ରାମେ ଅପବାଦ
ଧରି ନୁହେଁ; ଦିନୁ ଦିନ ନାନା ପରମାଦ
ଘଟାଇ, କପୁତ ମତେ ବୁଡ଼ାଇ ଲଜ୍ଜାରେ
ଅବସର ରଖି ନାହିଁ ମୋ ପାଇଁ ସଂସାରେ
ମୁଣ୍ଡ ଟେକି କାହା ଆଗେ କହିବାକୁ କଥା ।
ତୁମ ଲାଗି, ତୁମ ଲାଗି ଏତେ ହଟହଟା
ଭୋଗିବାକୁ ହେଲା ମତେ ! କରେ ମୁଁ ଜୁହାର
ଏବେ ତବ ସ୍ନେହେ ଧୂର୍ତ୍ତ ! ଏ ସଙ୍ଗ ତୁହାର
ଲୋଡ଼ା ନାହିଁ ମୋର ଆଜ ।

**ଦେବତା**

(ଫେରି )

ଅଭିମାନ ପରେ

ଏତେ ପୁଣି ଅପମାନ ! ତୋ' ଚରଣତଳେ

କିବା ଅପରାଧ ସଖି, କରିଛି କହ ତ
ଭୋଗିବାକୁ ଏ ଲାଞ୍ଛନା ? ସାତ ଶତ୍ରୁବତ
ଫେରାଇ ଦେଇଛ ମତେ ଦ୍ୱାରଦେଶୁ ତବ
ଧିକ୍କାର ମୋ ସଙ୍ଗ-ସ୍ପର୍ଶ ! ନୂଆ ଅନୁଭବ
ପାଇ କି ମୋ ପ୍ରଣୟର, 'ଶଠ' ବୋଲି ମତେ
କହିବାକୁ ଥିଲ ଆଜ ? ହାୟ, ସଖି, ସତେ
ସଂଶୟ କି ହେଲା ପୁଣି ଚିତ୍ତେ ଆଜ ସରି
ବୁଝିବାକୁ ଏ ଜନର ହୃଦୟ କପଟ
ଏକାନ୍ତ ଆଶ୍ରୟେ ପଶି ଯେ ଚରଣତଳେ
ମାଗିଛି ସେନେହ ତବ ?

## ଲକ୍ଷ୍ମୀ

ସ୍ନେହ ଯେତୁ କରେ
ସେ କି, ଧୂର୍ତ୍ତ, ସ୍ନେହୀ ଜନେ ଦିଏ ଅପମାନ
ଏତେ ଲୋକଆଖି ଆଗେ ? ମରଣ ସମାନ
ଲାଞ୍ଛନା ସେଦିନ ଦେଇ ମୁଦ୍ରିକାର ଲାଗି
କେଉଁ ମୁଖେ ଆସିଅଛ ଶଠ ଅନୁରାଗୀ !
ମାଗିବାକୁ ପ୍ରେମ ମୋର ? ନେଇଛ ମୁଦ୍ରିକା,
ଆଉ କିସ ଅଛି ପୁଣି ଯାଚନା ଅଧିକା
ମୋଠାରୁ ହେ ନଟଶ୍ରେଷ୍ଠ ? ଯାଅ ଚାଲି ଭଗ,
ପାଟି ଶୁଣି ଦନା-ବୋଉ—

ଦେବଭୂତି

ଏସନ ମୁଖସ୍ତ

କପାଁ ହୁଅ ସଖି, ଆଜ ? ଅପୋଷ କ ପାଅ
ମୁହିଁ ସେହ୍ନ ଶ୍ୟାମ ତବ ? ବୃଥା ଏତେ ଦାହ୍ନ
ପ୍ରାଣେ ମୋର ଦଅ କପାଁ ସାମାନ୍ୟ କଥାରେ,
ସ୍ନେହ ନକ ଜାଣେ ନାହିଁ କ୍ଷମା କରିବାରେ ?
ମୋର ସଙ୍ଗ ଲଗି ବନ୍ଧୁ, ବହୁ ଅପମାନ
ଲଭିଲଣି । ମୁହିଁ ଜାଣେ ମୁଁ ତାର ନଦାନ ।
ଶେଷ ବାର କ୍ଷମା କର ।

ଲକ୍ଷ୍ମୀ

କ୍ଷମା ନାହିଁ ଜାଣେ ।

ରଖ ତବ ସ୍ନେହ କଥା । ସ୍ନେହ ଗୁଣଗାନେ
ଭୁଲାଇ ଏ ବାଳକାରେ ଏତେ ଦନ ଧରି,
କପଟପ୍ରଣୟ-ମୋହେ ବୁଦ୍ଧି ଅନ୍ଧ କରି
ରଖିଥିଲ ଏତେ କାଳ; ଏବେ ମୁଁ ସକଳ
ବୁଝିଲଣି ଆଚ୍ଛା କରି ।

ଧିକ ଏ ଚପଳ

ମନ ମୋର ! ଜାଣି ଜାଣି ଯାଙ୍କ କପଟତା
ଧାଉଁଥିଲ ପଛେ ପାଛା; ଏ ମରମ-କଥା
କହିଲ ଯା' ଶୁଣାସେ ମୁଁ ଏ ଶଠ ଜନରେ
ଏ ପ୍ରାଣର ପ୍ରିୟତମ ସ୍ଥାପିଣ ମନରେ

ସେଲାଗି ସରମଭରେ ନଇଁ ଆସେ ମଥା !
ସେ ବ୍ୟର୍ଥ କଥା

ହବ ବା କ ଲାଭ ଆଜ ?

ଯାଅ ଏବେ ଫେରି,
ନିଦ୍ରା ଯାଏ ମୁହିଁ ସୁଖେ, ହେଲେ ପୁଣି ଡେରି
ଶେଯ ଛାଡ଼ୁଁ କାଲି ପ୍ରାତେ କହି ନାନାକଥା
ଗ୍ରାମ-ନାରୀ ମୋର ନାମେ ଲଗାଇବେ ଅଠା ।
ତୁମ ଲାଗି ମୁଖ ଲାଜ ମାରିବାକୁ ମୁଖେ
ନାହିଁ ଆଜ ଅଭିଳାଷ । ମୁହିଁ ମୋର ଦୁଃଖେ
ରହେ ଗୃହେ । ତୁମେ ତୁମ ମନ୍ଦିରରେ ରହି
ପାଉଥାଅ ରାଜ-ପୂଜା ।

**ଦେବତା**

ଆଚ୍ଛା, ତେବେ ସତ୍ୟ,
ଯାଏ ମୁହିଁ ନିଜ ପୁରେ । ନିଦ୍ରା ଯାଅ ସୁଖେ
ନିଶ୍ଚିନ୍ତେ ଆପଣା ଶେଯେ । ଯାଉଛି ମୁଁ ପୁରେ,
ମୋ ଲାଗି ଯା' ଅପବାଦ ରହୁ ଏବେ ଦୂରେ ।
ଏଇ କ'ଣ ହେଲା ଶେଷ ?

**ଲକ୍ଷ୍ମୀ**

ହେଲା ଅବା ଶେଷ
ନାହିଁ ତହିଁ ମୋର କିଛି ଆପତ୍ତି ବିଶେଷ ।

ଯୁବତୀ ମୁଁ, ଅଛି ମୋର ପୁଣି କୁଳମାନ,
ଦେବତା ଜାଣିବ କେମନ୍ତେ ଜବା ଅପମାନ
ଲୋକେ ହସେ । ଥର ଥର ପାଇ ଗୁରୁ ଲାଜ
ମୁଣ୍ଡ ଟେକି ଚାଲେ ଯାହା, ରମଣୀ-ସମାଜ
ଆଚମ୍ବିତ ହୁଏ ଭାବ । ତୁମେ ନଟବର,
ନିଜ ସୁଖ ପାଇଁ ନାଟ ରଚୁଛ ମାତର ।
ସେ ନାଟରେ ମିଶି ଲାଜ ନ ପାଏ ସବୁ,
ଯାଅ ତୁମେ, ମୋ ଦିନ ମୋ ଦୁଃଖେ ଯାଉ ବହି ।

(ଦେବତା ଆଉ କିଛି ନ କହି, ମୁହଁ ଫେରାଇ ଧୀରେ ଧୀରେ ବନମଧ୍ୟରେ ଲୁଚିଗଲେ । ଲକ୍ଷ୍ମୀ ବାତାୟନ ଦେଇ ଚାହିଁ ନେଥିଲେ ସେଇ ଅନ୍ଧାର ଆଡ଼କୁ ମୁହଁ ଫେରାଇଲ ।)

## ଲକ୍ଷ୍ମୀ

ଚାଲିଗଲେ ସତେ !

ସତେ ଚାଲି ସେ ଯେ ଗଲେ !
ଲେଉଟାଇ ପୁଣି ତାଙ୍କୁ ଆଣେ କେଉଁ ଛଳେ ?
ସେଦିନର ଅପମାନ ଲାଗି ଦୁଇ କଥା
ଶୁଣାଇ ନୁଆଇଁ ଥାନ୍ତି ସିନା ତାଙ୍କ ମଥା,
କିଛି ଯେ ନ କହି, ମାନେ ଚାଲିଗଲେ ସତେ !
ଆଉ କି ଆସିବେ ନାହିଁ ? ଭାବିଲେ କି ମତେ
ସତ ବୋଲି ? ସତେ କ'ଣ ଶେଷ ଦେଖା ସବୁ,

ଫୁଟି ହେଜ ଯତେ ତାଙ୍କ ପ୍ରଣୟ ଗରବୁଁ ?
ଯାଏଁ ଘରୁ—ଧାଇଁ, ପଥ କରେ ଓଗାଳବ ।
ପିତ ? ପିବ ?— ନାଇଁ ଲୋ ମା, ବାଜେ ଡବଡ଼ବ
ଗ୍ରାମଯାକ କଥା ମୋର ହାବମୁଦ ଲଗି,
ଆଜ ପୁଣି ଘରୁ ଗଲେ, କେ ଜାଣି ଅଭାଗୀ-
ଭାଗ୍ୟରେ କ ଲେଖା ଥିବ ?

ଡାକେଁ ତେବେ ଥରେ,

ଲୁଚଥିବେ କେଜାଣି ବା କେଉଁ ବୃକ୍ଷତଳେ,
ବୁଝିବାକୁ ମନ ମୋର । ଡାକେଁ ତେବେ—
( ଅନୁଚ ସ୍ୱରରେ ) ସାଥି !

ବନ୍ଧୁ ମୋର, ଦୋଷ ସବୁ ମାଗେ ମୁଣ୍ଡ ପାତ;
ଫେର ଥରେ, ଶୁଣ ଥରେ; ଦିଅ ଥରେ କ୍ଷମା,
ହେ ସୁନ୍ଦର, ଆଜ ଥରେ କର ପରକ୍ରମା ।
ଶୁଣ, ଶୁଣ, ଫେର ଶୁଣ, ଆସ ଆଜ ଥରେ
ଶ୍ୟାମ ମୋର, ସାଥି ମୋର !

ମାଆଲୋ ପଥରେ

ପିବା-ଜନ ଯଦ ଶୁଣେ, ବୁଡ଼ବ ମୋ ଭେଳା,
ନ ଡାକବ ଆଜ ପୁଣି । ଯାହା ଅବହେଳା
ଦେଲ ତାଙ୍କୁ ସେଥିରେ ସେ ଫେରବେ କପର ?
ଶୁଣିବେ ବା କପାଁ ଡାକ ?

( ବସିପଡ଼ି ) ସତେ ମୁଁ କି କଲି !
କଅଣ ନ କଲି ହାୟ ରାକ୍ଷସୀ ମୁଁ ସତେ ।

ରଜା ମୋର ଆସିଥିଲେ ଦେଖିବାକୁ ମତେ
ଯାଚି ତାଙ୍କ ସ୍ନେହ ଦୟା ପଦତଳେ ମମ;
ଇତର ପରି ମୁଁ ତାଙ୍କୁ ଦିଆଇ ସରମ
ଫେରାଇଲି ଘୃଣା କରି । ମୁଖେ ସିନା କଥା
ନ କହିଲେ ଶ୍ୟାମବନ୍ଧୁ, କେତେ ସତେ ବ୍ୟଥା
ଲାଗି ଲୋ ନ ଥିବ ପ୍ରାଣେ ମୋର ଏ ଆଘାତରେ !
କି କଲି, କି କଲି, ମୁଁ ଲୋ ! ଜଗତସଂସାରେ
ଏକମାତ୍ର ସାଥୀ ମୋର, ପ୍ରାଣବନ୍ଧୁ ମମ,
ତାଙ୍କୁ ମୁଁ ଫେରାଇଦେଲି, ଏଡ଼କ ନିର୍ମମ ।
କାହା ପାଶେ ଏବେ ଯିବି, ପଶିବି ଶରଣ,
କେ ଦେବ ସେନେହ ମତେ ? କାହାର ଚରଣ
ଧରିଲେ କେ ଦେବ ମତେ ଶ୍ୟାମର ସେନେହ,
ପାଇବି କାହିଁ ବା କହ ତାହା ସମ ପ୍ରିୟ,
ପ୍ରେମମୟ, ଅନ୍ତର୍ଯାମୀ ।

ସେଦିନ ନିଶାରେ

ଦେଖିଲି ମୋଲାଗି ଧାଇଁପଡ଼ି କେଉଁଠାରେ
ଅଙ୍ଗୁ ବହେ ରକ୍ତଧାର ! ପୋଛିଲି ପଣତେ,
ଚୁମ୍ବି ସ୍ୱେଦ-ସିକ୍ତ ମୁଖେ କହିଲି ମୁଁ, 'ସତେ·

କହ ମତେ କବା ଘୁର ମଙ୍ଗ ଲଗି ମୋର
କୋମଳ ଏ ଅଙ୍ଗ କପାଁ ବ୍ୟଥା ଏତେ ଘୋର
ଦିଅ ତୁମେ ! କପାଁ ଏତେ ପଥ-ଶ୍ରମ କହ,
ମୋର ଘୁର ଲଗି କପାଁ ଏତେ ଦୁଃଖ ସହ ?'
ଭାଷିଲେ ହସି ସେ ଶ୍ୟାମ, 'ଜନ୍ଧବ କେସନେ
ତୁମେ ମୋର କବା ଲକ୍ଷ୍ମୀ ? ହୃଦୟ-ଆସନେ
ବସିଛ ଧରଣୀ ମାଡ଼ି । ଧ୍ୟାନ ସଦା ମମ
କେମନ୍ତେ ଏ ପ୍ରାଣ-ଧାରା ସ୍ରୋତେ ସ୍ରୋତ ସମ
ତୁମର ଚରଣ ସାଥେ ଦିଅନ୍ତି ମିଶାଇ
ଅଣୁ ପରମାଣୁ ଧରି । ତେଣୁ ଥାଏ ଧାଇଁ
ଚିତ୍ତ ମୋର ତବ ପାଶେ ସଖି, ଅହରହ
ଛନ୍ଦେଦେ ଭୋଗଇ ହୃଦୟ ବେଦନା ଦୁଃସହ ।
ନଖିଲ ମୋ ପ୍ରାଣ ଉଚ୍ଛେ ତୋ ସାଥେ ମିଳନ
ଅବସର ପ୍ରତିକ୍ଷଣେ । ଅରହ-କଷଣ
ବଡ଼ ଲାଗେ ପ୍ରାଣେ ସଖି ! ସେନେହ ଯାଚନା
ଲାଗି ମୋର ଅପମାନେ ନ ଥାଏ ଶୋଚନା ।
ନିତ୍ୟ ମୁହିଁ ମାଗି ବୁଲେ ଭିକ୍ଷାପାତ୍ର ଧରି
ଏ ସଂସାର ଦ୍ୱାରେ ଦ୍ୱାରେ, କ୍ଷୁଧାତୁର ପରି,
ସେନେହର ଭିକ୍ଷାଞ୍ଜଳି କେବା ଦିଏ ମତେ ?
କେତେ ରସବନ୍ତ ଛନ୍ଦ ତୋ ପରି ଜଗତେ ?

ଦେଲେ, କେତେ ବନ୍ଦନପଦ୍ୟେ ମାଗିଥାନ୍ତୁ କଣ୍ଠୁ,
ସେ ସ୍ନେହେ କି ଆତ୍ମା ପୂରେ ? ତା'କି ମୁଁ ମାଗିଛୁ ?
ତୁମେ ଲକ୍ଷ୍ମୀ ମୋର ଲାଗି ସ୍ନେହ କର ମନେ'
ସେ ସ୍ନେହ କି-ଧନ ମୋର, କହିବ କେମନ୍ତେ ?
ଧୂପ ଦୀପେ କରୁଛନ୍ତି ପୂଜା ଶତ ଶତ
ଏ ସ୍ନେହ କାହିଁ ଗୋ ତହିଁ କରିବ ତୃପତ
ଆତ୍ମା ମୋର ? ତେଣୁ ଲକ୍ଷ୍ମୀ-ରାଣି, ସ୍ନେହ ତବ
ସକଳ-ଗୌରବେ ମୋର ପ୍ରଧାନ ଗୌରବ ।'
ଗୋଟି ଗୋଟି ମନେ ପଡ଼େ ସେଦିନର କଥା
ରାକ୍ଷସୀ ମୁଁ ସେ ସ୍ନେହର ବୁଝିଲି ବା ମଥା !
ବନ୍ଧୁ ମୋର, ସଖା ମୋର, କ୍ଷମା କର ମତେ,
ଲେଉଟ ଦେଖିବ ପୁଣି ମୋ' ଅନ୍ତର-ଗତେ
ସେଇ ଲକ୍ଷ୍ମୀ, ସେଇ ଲକ୍ଷ୍ମୀ ! ତୁମ ଛଡ଼ା ହରି
କାହା ସଙ୍ଗେ ଦେଇ ନାହିଁ ଆନନ୍ଦ ଏପରି
ଲଭେ ଯାହା ତବ ସାଥେ ପରାଣ ମୋହର !
ସେ ଆନନ୍ଦ, ସେଇ ସୁଖ ଲାଗି ନଟବର,
ତୁମ ଲାଗି ତୁମଠାରେ ଢାଳିଅଛି ପ୍ରାଣ,
ଏ ପ୍ରାଣେ ଯେ ସ୍ନେହ ବନ୍ଧୁ, ତୁମେ ଖାଲି ଜାଣ !
ସକଳ ଏ ଅପବାଦେ, ଅପମାନେ ହରି,
ନାହିଁ ମୋର ହୃଦ ତବ ପଦ ପରିହରି !

ତୁମର ସଙ୍କେତ ନତ ତେଜ ପିତାମାତା,
ନଶୀଥେ ଗୁଡ଼ନ୍ତି ଘର ଶୁଣିବାକୁ କଥା
ତୁମର ମଧୁର ମୁଖୁ । ଫେରିଲେ ଭବନେ
ସକଳ କରମେ ଶ୍ୟାମ, ଭାବେ ଅନୁକ୍ଷଣେ
ତୁମର ସୁନ୍ଦର ଛବି; ଅନ୍ତର ନରତ
ଡାକୁଥାଏ, 'ହେ ଦେବତା, ସଖା ହେ ମହତ,
ସବୁଠାରୁ ଆପଣାର ତୁମେ ମୋର ଶ୍ୟାମ,
ଆଖି ତୃପ୍ତ ମୋର ଚାହିଁ ରୂପ ଅଭିରାମ,
ଆତ୍ମା ମୋର ତୃପ୍ତ ମାଗେ ସ୍ନେହ ଧାର ତବ,
ଇନ୍ଦ୍ରିୟ ତୃପତ ପାଏ ତବ ଅନୁଭବ ।
ଏଡ଼େକ ଗୌରବେ ପ୍ରଭୁ ଏଡ଼େକ ଆଦରେ
ଅଭାଗୀର ମୁଣ୍ଡ ନଇଁ ଯାଏ ସରମରେ,
ସଖା ତୁମେ, ବନ୍ଧୁ ତୁମେ, ପ୍ରଭୁ ତୁମେ ମୋର
ତୁମେ ଜାଣ କପାଇଁ ହେ ଲଗାଇଛ ଡୋର ।'
ଏକାନ୍ତ ଭରସା ରଖି ପ୍ରଣୟରେ ତବ
ସହୁଛି ସକଳ ଅପବାଦ ଅଗୌରବ ।
କ୍ଷମା କର ପ୍ରଭୁ, ଆଜ ଏ ରାତିର ଦୋଷ
ସେହ୍ନ ଲକ୍ଷ୍ମୀ ଡାକେ ମୁହିଁ, ମୁଞ୍ଚ ମନୁ ଶ୍ରେଷ ।
ଉଠି (ପୁଣି ବାତାୟନ ଦେଇ କିଛୁକ୍ଷଣ ନୀରବରେ ଚାହିଁ )
ନାହିଁ ସେ ଆସିବେ ଆଜ । ନାହିଁ ସେ ଫେରିବେ !
ଆଦରେ ନୟନ ଚପି ନାହିଁ ସେ ଧରିବେ ।

କାହା ମୁଖ ଶୁହିଁ ଆଜ ମର୍ମର ବାଣୀ
ଏକାନ୍ତ ବିଶ୍ୱାସେ ମୁହିଁ କହିବି ବଖାଣି ?
ଅଧରେ ନ ଫୁଟୁ ଯେବା ମରମର କଥା,
ଜାଣିବ, ବୁଝିବ ମୋର ମରମର ବ୍ୟଥା ?
କିଏ ଆଜ ମୋର ଝୁର-ଚୂଳ-ସ୍ନେହ ଲାଗି
ଆକୁଳେ ଧାଇଁବ ଗତେ ହୋଇ ଅନୁରାଗୀ ?
କିବା ସ୍ନେହ ହରାଇଲା, କି ଅବା ସଙ୍କୋଚ,
ଦେବେ କି ତା' ମତେ ମୋର ଜ୍ଞାତି, ପିତା, ମାତା ?

( ପୁଣି ବଶିଷ୍ଠଙ୍କ ହାତ ଯୋଡ଼ କରି )

ଡାକେ ଶେଷଥର ଶ୍ୟାମ, ପୂର୍ବ ସ୍ନେହନାମେ !
କ୍ଷମା କର । ଫେର ପୁଣି । ଏ ନନ୍ଦର୍ପୁ ଗ୍ରାମେ
ତୁମରି ଚରଣେ ବନ୍ଧୁ କରିଣ ଭରସା
ସହିଥିଲି ଅପବାଦ । ଏବେ ବି, ଲୋକ ହସା
କରିଲେ ହେ, ପରିହାର କରି ପଦତଳୁ,
କାହା ନାମ ଡାକି କହ ମୋର ଦୁଃଖ ଗଳୁ
କହିବି ନୟନ ଲୁହ ତିନ୍ତାଳି ଉରସେ ?
କେ ଶୁଣିବ ମୋ ବିଳାପ ? ପରାଣେ ପରଶ
ଲାଗିବ କାହାର ଏଇ ଅଭାଗୀର ଲାଗି ?
ତ୍ୟଜ ନାହିଁ, ତ୍ୟଜ ନାହିଁ, ଆହେ ଅନୁରାଗୀ,

ଡାକେ ସେନ୍ତ ଲକ୍ଷ୍ମୀ ତବ । ଦେବା-ଅଧିକାରେ
ଗର୍ବ ବନ୍ଧୁ ପିନା ମୁହିଁ କହିଲି ଧିକ୍କାରେ,
ନିଜର କି ଅଧିକାର ଥିଲା ନଟବର ?
ସ୍ନେହ ଯୋଗୁ ହେଲା ସବୁ । ସ୍ନେହେ କରି ବନ୍ଧୁ
ଅଗ୍ରଣୀରେ ଉଠାଇଲ ନିଜର ସମାନେ
ଭୁଲିଇଲ ଜ୍ଞାନ ତାର ଆଦର ସନ୍ମାନେ,
ତେଣୁ ତବ ଅବମାନେ ହେଲା ତା' ସାହାସ ।
ଅଜ୍ଞାନେ, ସେନେହେ ବନ୍ଧୁ କଲା ଅପଯଶ
ତାର କହେ ନାହିଁ କ୍ଷମା ? କହିଁ ପ୍ରେମ ଢାଳି,
ଏ ହୃଦୟେ ତବ ପ୍ରେମ-ପରଶ ସଞ୍ଚରି,
କଲ ତେବେ ମୋହ-ମୁଗ୍ଧ ଏଇ ବାଳକାରେ
କପାଇଁ ପ୍ରଣୟ-ମନ୍ତ୍ର ଝାଡ଼ି ମୋହଠାରେ
ଉଠାଇଲ ସ୍ନେହ ମମ ? ଜାଣି ମୁଁ ନ ଥିଲି
ସ୍ନେହ କିବା; ତୁମେ ଶ୍ୟାମ, ବୁଝୁ ମୋର ଚିତ୍ତ
ଫିଟାଇଲ ଜ୍ଞାନ ତାର । ଭୁଲିଲି ମୁଁ ହେଲେ
ଦେବତା ବୋଲି ମୁଁ ଶ୍ୟାମ, ତୁମରେ ହେ କେବେ;
ସାଥୀ ପରି ତୁମ ସାଥେ କଲି ରଙ୍ଗରସ,
କେମନ୍ତେ ଜାଣିବ କହ, ବାଳୁତ ବୟସ !
ସେଇ ଜ୍ଞାନେ ଦେଲି ଆଜ ଧିକ୍କାର ତୁମରେ
ଅବଜ୍ଞା ନ ଥିଲା କିଛି ତବ ପଦତଳେ ।

କ୍ଷମା କର ପ୍ରଭୁ, ଏବେ; ହୃଦୟୁ ମେଲାଇ
କହିଲି ଯା' ହୃଦ-କଥା । ପୁଣି ହେ ଗୋଟାଇ
ଭୂମିତଳୁ ରଖ ମତେ ତବ ପଦେ ତବ ।

ଲକ୍ଷ୍ମୀ ଦେବତାର ଆଗମନ ପାଇଁ ପୁଣି ଠିଆ ହୋଇ ବାତାୟନ ଦେଇ ବନ ଅଡ଼କୁ ଅନାଇ ରହିଲେ । ଦେବତା ଆସିଲେ ନାହିଁ । ଲକ୍ଷ୍ମୀ ଶଯ୍ୟା ଉପରେ ଅବସନ୍ନ ହୋଇ ପଡ଼ିଯାଇ କାନ୍ଦିବାକୁ ଲାଗିଲେ ।

ମଲି ! ମଲି ! ମଲି ଏବେ ନନା ବୋଉ ମୋର,
ବକ୍ଷ ମୋର ଯାଏ ଫାଟି, ବେଦନା ମୋ' ଘୋର !
ଆସିବନି ଧୂର୍ତ୍ତ ଶଠ, ବୁଟିଲନି ସ୍ନେହ,
ଲଜ୍ଜାରେ, ସରମେ ମୋର ଜଳିଯାଏ ଦେହ !
ତୁଚ୍ଛ ବନ୍ଧ ହୁଏ ଯେତେ ମାସ ଦେହେ ମମ,
ଶୁଣିଲେ ସେ ଦେବତାରେ ନିଠୁର, ନିର୍ମମ !
ସ୍ନେହ ଦେଇ ଫିଙ୍ଗିଦେଲା ଶେଷେ ସେ ନିଠୁର,
କେମନ୍ତେ ସହିବ କହ ପରାଣ ଆତୁର ?
ବନ୍ଧୁବୋଲି ଧରିଥିଲି, ଦେଲା ସେ ଫୋପାଡ଼ି
ନିରାଶ ସାଗର-ଜଳେ, ଧୂର୍ତ୍ତ, ନ ବରୁଣି !
ଶଶୁର ଆସିବ ପୁଣି ଦୁଇ ଦିନ ପରେ—
କାହିଁ ଯିବ ?—କାହିଁ ଯିବ ?—ଦିଶ ଦିଅ କରେ
ବୋଉ ମୋର, ମରିଯିବା ଭଲ ଏ ଜୀବନୁ,
ସେଇ ଏକା ଉଦ୍ଧାରିବ ମତେ ଏ କଷଣୁ ।

ହେଉ ଅବା ଶେଷ ଏଥି—ଢଏ ଚପି ଗଲା
ଯାଏଁ ମଣ..........................

ଦେବତା ସନ୍ଧ୍ୟା ବାତାୟନ ପଥରେ ଦେଖାଦେଲେ ।

## ଦେବତା

ଲକ୍ଷ୍ମୀ ମୋର, ଲବଣୀ-କୋମଳା,
ନିର୍ଦ୍ଦୟ ନ ହୁଅ ଗଣି, ପୁଣି ଡାକେ ସଖି,
ଏଥର ଆସ ଗୋ ଦାଣ୍ଡେ, ମାନ ମୋର ରଖି ।
ଶେଷ ଥର ସ୍ନେହ ଆଜ, ଦିଅ ଶେଷ ଦେଖା,
ସେଥିପାଇଁ ଫେରି ପୁଣି କଲି ଗୋ ଅପେକ୍ଷା ।
ଚରଣ ତଳର ସଖି, ନ ପାରେଁ ମୁଁ ସହି ।
(ନୀରବତା)
ପୁଣି କହାଁ ଦୁଃଖ ଦିଅ ଅବହେଳା ବହି,
ସ୍ମର ସଖି, ପୂର୍ବ ସ୍ନେହ ।
(ନୀରବତା)
ପୁଣି ଯିବ ପୁରେ
ଫେରି ମୋର ? କାଟିବି ଏ ରଜନୀ ଆଶ୍ରୁରେ ?
ସୁନ୍ଦର କି ଦିଶିବ ତା ସଖି, ତୋ ନୟନେ ?

## ଲକ୍ଷ୍ମୀ

(ଗୃହଭିତରୁ, ଶଯ୍ୟାଉପରେ ବସି)
ଆସିଛ ? ଆସିଛ ଫେରି ପୁଣି ମୋ ଭବନେ

ରଖିବାକୁ ମାନ ମୋର ? ଅହା ମୁଁ ଗଲନେ ।
କଏ ତୁମେ ?

ଦେବତା

ଜାଣିନା କ ମୋ ମୁଖ ବଚନେ ?
ପର ପର ଗ୍ରହ କର୍ପାଁ ?

ଲକ୍ଷ୍ମୀ

ପର ମୂର୍ଖ ସିନା !
ପର ଆପଣା ତ ଏଇ ଗଢ଼ଗଲ ଚିହ୍ନା
ସାମାନ୍ୟ କଥାରେ—

ଦେବତା

ଆହା କରଲ ଧିକ୍କାର
ସିନତ ନ ଶୁଣି କଲ ଅଜସ୍ର ପ୍ରହାର—

ଲକ୍ଷ୍ମୀ

କ୍ଷମା କର, କ୍ଷମା କର, ପାଦ ଦୁଇ ଧରେ—

ଦେବତା

କ୍ଷମା କ ନ କର ଆସିଅଛୁ ଆଜ ଥରେ ?
ଉଠ ସଖି, ଦଅ ହାତ —
ଲକ୍ଷ୍ମୀ ଗୃହଦ୍ୱାରରୁ ହାତ ବଢ଼ାଇଦେବ । ଦେବତା ବାଡାଘ୍ରନ
ବେଳ ସେହି ହାତକୁ ଚପି ଧରଲେ ।

ଦେବତା

ଏତା କାନ୍ଦିପାଇଁ ?

କାନ୍ଦୁ ଥିଲ ?

ଲକ୍ଷ୍ମୀ

ଧିକ୍କାର ଯେ ଦେଲକ ଫେରାଇ
ତୁମରେ, ନଠୁର ତାର ଚକ୍ଷେ କାହିଁ ଜଳ ?
ଥାଉ ତାହା । କହ ମତେ ସୁନ୍ଦର, ଏଥର
କ୍ଷମା କ କରିଛ ସତେ ? ମୋ ଧିକ୍କାର ବାଣୀ
କେତେହେଁ କୋମଳ ବୁକେ ଯାଇଥିବ ହାଣି;
କ୍ଷମା ତାର କାହିଁ ପୁଣି ? ତଥାପି ମୁଁ ମାଗେ
ତୁମର ହୃଦୟୁ ଗୁଣେ ।

ଦେବତା

ଗାଢ଼ ଅନୁରାଗେ
ପ୍ରଣୟୀ-ଧିକ୍କାର ଲାଗେ ମଧୁର, ସଜନି !
ବୁଝିଲି ପ୍ରଥମେ ସଖି, ଆଜି ଏ ରଜନୀ,
ମୋ'ଠାରେ ଯେ ପ୍ରେମ ତବ, ଶକ୍ତି ତା'ର କିବା !
ଗ୍ରହଣ ଯେ କରେ ସଖି, ତାହାର ଫିଙ୍ଗିବା
ଅଧିକାର ସିନା ଥାଏ ? ନ ଥିଲେ ପ୍ରଣୟ,
ମୁଁ କପାଁ ଆସନ୍ତି ଏଥି ହୋଇଣ ଅଥୟ,
ତୁମେ ବା କପାଇଁ—

### ଲକ୍ଷ୍ମୀ

ଆଜ ଲଜ୍ଜା ନାହିଁ ବଂଧୁ ।
ମୋ ଧିକ୍‌କାର ପାଇ ପୁଣି ଆସିଛ ଯା' ପ୍ରିୟ,
ସେଇ ଲାଜେ ଯାଏଁ ମରି ।

### ଦେବତା

ନ ଆସି କପଟ
ରହନ୍ତ ମୁଁ ସଖି, କହ ? ଯାଏଁ ମୁହିଁ ମରି
ତୁମରି ମିଳନ ବିନା । ଧିକ୍‌କାର ବା କବା
ବାଧା ଚହିଁ ? ଜାଣିଚ୍ଛ ମୁଁ ଏ ବକ୍ଷେ ସହିବା
ବନ୍ଧୁର ମୋ' ପଦାଘାତ ।
ଯାହେ ସେ ରଜନୀ,
ଉଠ ଏବେ, ଆସ ଦାଣ୍ଡେ ବଦନ, ସଜନି,
ଗୃହେ ମୁଖେ ଭଲେ ଥରେ ।

### ଲକ୍ଷ୍ମୀ

ଯିବ, ହାତ ଗୁଡ଼ ।
ଶ୍ରୀବତ୍ସ-ଲାଞ୍ଛନ ବୋଲି ଡାକ ନାମ ଯାର,
ତାଙ୍କୁ ମୁଁ ନିଷ୍ଠୁର ବୋଲି କହୁଥିଲି ସତେ,
ଅନ୍ଧକାରେ ଏ ବନ୍ଧୁରେ ଜାଣିବି କେମନ୍ତେ !

## ୪

ସୁନାରୀ ଘର । ଜନୈକା ପୂଜକ-ପତ୍ନୀ-ସେଇ ବାଟେ ଯାଉ
ଯାଉ ସୁନାରୁଣୀଙ୍କୁ ଡାକିବାକୁ ଲାଗିଲେ ।

### ପୂଜକ-ପତ୍ନୀ

କବାଟ ଫିଟା ଲୋ ବୋଉ—ଆଗୋ ଜେମା-ବୋଉ
(ଗୀରବତା)
ଅଛ ନା ମଲଣି ସତେ । ଫୁଲସଞ୍ଜ ନୋହୁ
ଶେଯ ପାରି ଶୋଇଲଣି ।—କି ଭାଗ୍ୟ ତୁମର !

### ସୁନାରୁଣୀ

( କବାଟ ଫିଟାଇ )

ନେତ-ବୋଉ, ଆସ ଆସ, ଭଲ ତ ଖବର ?

ଏତେ ଦିନେ ଆଜ କପାଁ ମନେ ପଡ଼ିଗଲ
ଆସିଲ ବା ଏ ବାଟରେ ଆଜ ଭ୍ରମ କରି !
କି ଖବର ? ଆସ ଘରେ—

### ପୂଜକ-ପତ୍ନୀ

ବସିବାକୁ ଛର
ମୋର ପୁଣି ଅଛି ଆଉ ? ଏତେବଡ଼ ଘର
ଦେଖିବାକୁ କେହି ନାହିଁ—ବାଟେ ଯାଉ ଯାଉ
ଭାବିଲି ମୁଁ ଆସିବି କି ନ ଆସିବି ଆଜ,
ଜେମା-ମା'କୁ ଦେଖିଯାଏଁ । ଘରଲୋକ ଜାଣ
ସବୁବେଳେ ଦେଉଳରେ । ଦେଲେ ଯେତେ ଗୁଣ
ଗତି ନୋହୁଁ ଫେରିବାକୁ, ହେଲା ନାହିଁ କିଛି,
ତା'ପରେ ସେ ମହାପାତ୍ର-ଝିଅ କଥା—ଛି ! ଛି !
ତା' ଯୋଗୁଁ ତ ସାରା ହେଲେ ପଣ୍ଡା-ପଡ଼ିହାରୀ ।

### ସୁନାରାଣୀ

ଆଉ କିଛି ଘଟିଲା କି ? ନନା! ତା' ତିଆର
କହିବାକୁ ଆଉ ପରା ବନ୍ଦ ସବୁ କଥା ?

### ପୂଜକ-ପତ୍ନୀ

ଆଜ ପରା ଲକ୍ଷ୍ମୀ ଦେହେ ଦେବତାର ବସ୍ତ୍ର
ଦେଖିଛନ୍ତି ଲୋକେ ପୁଣି—

## ସୁନାରଣୀ

ଆଚମ୍ବିତ ସତେ !

## ପୂଜକ-ପତ୍ନୀ

କାହା ଗୋପ୍ୟକଥା କଏ ଜାଣିବ କେମନ୍ତେ ?
କହୁଛନ୍ତି ମହାପାତ୍ର ମନ୍ତ୍ରପନ୍ତ କରି
ବନ୍ଧନ କରିଛୁ ବୋଲି । ତେଣୁ କରି
ଆସୁଚନ୍ତି ଘରେ ତା'ର । ନ ହେଲେ କାହିଁକି
ଏତେ ଝିଅ ଥାଉ ବୋଲି ତା' ଝିଅ ପାଇଁକି
ଧାଇଁଥାନ୍ତେ ? ସେଇଠି କି ମୋ' ପିଲା ନ ଥାଇ ?

## ସୁନାରଣୀ

କେଜାଣି ମା ! କାହା କଥା କଏ ଜାଣିଥାଇ !
ଲକ୍ଷ୍ମୀରେ ଦେଖିଲେ କାଲୁ ପେଟ ପୂରିଯାଏ
ଯାହା କହ, କେତ-ବୋଲୁ । ସେତେ ଆସୁଥାଏ
ଆମ ଘରେ ସବୁବେଳେ । ରୂପରେ ତାହାର
ଅଗଣାରେ ଫୁଲ ଫୁଟେ । ଜେମା-ବାପାଙ୍କର
ସବୁବେଳେ ବଡ଼ ମନ, ନାନା ଅଳଙ୍କାର
ଗଢ଼ି ତା'ର ମନ ଜାଣି, ରୂପ ଲାଗି ତା'ର
ଦେବାକୁ ପିନ୍ଧାଇ ତା'ରେ ।

କବା ଗୁଣ ପୁଣି !
ଉଇବାଟ କଥା ନାହିଁ, ବଡ଼ ଭୁନ ଭୁନ

କଥା କହେ—ତା’ ତୁଣ୍ଡରେ ମିଠା ଶୁଭେ କଥା,
ସବୁବେଳେ ଲଜେ ଲଜେ ପୋତିଥିବ ମଥା—
ବଡ଼ ଲାଜକୁଳୀ ପିଲା। ପର୍ବ-ପର୍ବାଣୀରେ
ପିଠା-ପଣା ଯାହା କରୁ ଧରି ଥାଳଟିରେ
ଦେଇଯିବ ହସି ହସି ‘ବୋଉ ଦେଲା’ ବୋଲି।
ଧନ୍ୟ ଗର୍ଭ-ଧାରୀ ମାତା—ରଖିଥାଇ ତୋଳି
ମୁଣ୍ଡ’ପରେ ତାକୁ—ସେ ତ ଯୋଗ୍ୟ ରଖିବାର
ଏଭଳି ରତନ ଧରେ ଉଦର କାହାର ?
ତା’ର କବା ଦୋଷ କହ ?

## ପୂଜକ-ପତ୍ନୀ

କେ ଜାଣି ଲୋ ମାଆ,
ଲୋକତୁଣ୍ଡେ ବାଜୁଅଛି କଥା କାହିଁ କାହିଁ—
ଶୁଣାକଥା କହେ ସିନା ! କହୁଛନ୍ତି କେହି,
ଦୁଇ ମାସ ଗର୍ଭ ତାର—

## ସୁନାରଣୀ

ଛି ! ଛି ! କାନ ଦେଇ
ଏ କଥା ଶୁଣ ଲୋ କିଆଁ ? ଶୁଣିଲେ ଯେ ପାପ !
ଯା ତୁଣ୍ଡୁ ଏ କଥା ଆସେ, ପଡ଼ୁ ଅଭିଶାପ
ତା’ ମୁଣ୍ଡେ ଅକାଳ-ବେଳେ।

## ନେପଥ୍ୟ

ଆହେ।—ଶୁଣି ଯାଆ !

## ପୂଜକ-ପତ୍ନୀ

ଆସିଲେଣି ଘରଲୋକ—ଯାଏଁ ମୁଁ—ତୁ ଥାଆ ।

## ସୁନାଶ୍ରଣୀ

ଆଚ୍ଛା ହେଉ—ଭୁଲିବନି—ଆସୁଥିବ ନାନି !

( ପ୍ରସ୍ଥାନ )

( ସୁନାସ୍ୱାର ପ୍ରବେଶ )

ଡେରି ଏତେ କଆଁ କଲ ? ମଲି ଆଖିପାଣି ।

## ସୁନାରୀ

କଥା ହେଉଥିଲି ପରା ପୂଜକ-ସଙ୍ଗରେ,
ଦେଉଳରେ ରଖା ହେବ ରାଧା-ପ୍ରତିମାରେ
ଚଞ୍ଚଳ ସୁନାରେ ଗଢ଼ି । ସେଇ କଥା ପାଇଁ
ହୋଇଥିଲି ଡେରି ମତେ ।

## ସୁନାଶ୍ରଣୀ

ପ୍ରତିମା ନ ଥାଇ
ଏତେ ଦିନ ଗଲା ଚଳି, ଏବେ କି କାରଣେ
ଆସିବେ ପ୍ରତିମା ପୁଣି ? ଦେବତା ସ୍ୱପନେ
ଜଣାଇଲେ କା'ରେ କହୁ ?

# ସୁନାରୀ

ନାହିଁ, ନାହିଁ—ଏଇ
ସବୁ କଥା ଆମର ସେ ଲକ୍ଷ୍ମୀକଥା ନେଇ ।
ଆଜ ପୁଣି ଦେବତାର କସ୍ରା ଦେଖା ହେଲା
ଆମର ଲକ୍ଷ୍ମୀର ଅଙ୍ଗେ । ଢଅଁ ସତେ ଦେଲା
ବଡ଼ କଷ୍ଟ ପିଲାଟିରେ । ନିର୍ଦ୍ଦୋଷ ପିଲାଟି,
ସେ କ'ଣ ଜାଣିବ ମାୟା ? ଅଙ୍ଗ ଦେଲେ କାଟି
ପଦେ ହେଲେ କଥା ତା'ର ତୁଣ୍ଡୁ ନ ଖସିବ,
ସେ ପୁଣି କି ମନ୍ତ୍ର ଜାଣି ବନ୍ଧନେ ରଖିବ
ଦେବତାରେ ? ସବୁ ସେ ଲୋ ଖେଳା ଦେବତାର ।
ଘଟିବାରୁ କିନ୍ତୁ ଏତେ କଥା ବାର ବାର
ପୂଜକ ଶୁଣିଲେ ଆଜ—ଏ ସାକ୍ଷିଗୋପାଳ
ବୃନ୍ଦାବନେ ଶ୍ରୀମଷ୍ଣଙ୍କୁ କରି ପରିହାର
ପାଗଳ ହେଲେଣି ଏଥି । ଲକ୍ଷ୍ମୀ ଅବା ଜାତ
ହୋଇଛନ୍ତି ଶ୍ରୀମଷ୍ଣ-କଳା ଧରି; ପିତାମାତ
ତେଣୁ ତା'ର ଧନ୍ୟ ଧନ୍ୟ; ତେଣୁ ଦେବତାର
ଏତେ ପ୍ରୀତି ତାହାଠାରେ; ତେଣୁ ବାରବାର
ମନ୍ଦର ଛାଡ଼ି ଢଅଁ ବରଦ-ବାଧିତ
ଲକ୍ଷ୍ମୀପାଖେ କରିଥାନ୍ତି ଭଜେ; ଆରାଧିତ
ହେଲେ ଯେତେ ଉପରୁରେ ମନ ନାହିଁ ଲାଗେ,
ପାଉଛନ୍ତି ରାଧା-ପ୍ରେମ ଲକ୍ଷ୍ମୀ-ଅନୁରାଗେ ।

ଏବେ ଏକ କଥା ହେଉ—ଦେବ-ମୂର୍ତ୍ତି-ପାଶେ
ଶ୍ରୀମତୀ-ପ୍ରତିମା ଗଢ଼ା ହେଉ ତାଙ୍କ ଆଶେ,
ସତୀ ଲଭି ତୁଷ୍ଟ ହେବେ ମହାରାଜ ଦେବତା,
ତୁଟିବ ବିରହ ତାଙ୍କ, ଶେଷ ହେବ କଥା ।
ପୂଜକମଣ୍ଡଳ ମତେ, ଏଇ ମତ କରି
ଡାକଲେ, କହିଲେ, ହେଉ ଆଜ କେଉଁପରି,
ଶୁଭାରମ୍ଭ କରିଦିଅ ସ୍ୱଧା-ପ୍ରତିମାର ।
ସେଇକ୍ଷଣି ଫିଟା ହେଲା ଦେଉଳ ଭଣ୍ଡାର,
ଅଣା ହେଲା ସ୍ୱର୍ଣ୍ଣ-ପିଣ୍ଡ; ପୂଜା-ଉପଚାର
ନାନା ମନ୍ତ୍ରେ ପଣ୍ଡା-ପ୍ରତିହାରୀ କଲେ ତାର;
ତା'ପରେ ଫେରୁଛୁ ଏଇ ।

## ସୁନାରୁଣୀ

ଦେବତା ଗଢ଼ିବା
ବଡ଼ କଷ୍ଟ, ବଡ଼ ଦୋଷ । ମନ୍ତ୍ର ପଢ଼ିବା
ନୁହେଁ ତ ଏ—କେ ଜାଣିବ କିସ ପୁଣି ଘଟେ,
ମଙ୍ଗିଲ କାହିଁକି ?

## ସୁନାରୀ

ଧ୍ୟାନ ଦେବତା ନିକଟେ
ରଖି ମୁଁ ଲାଗିବି କାର୍ଯ୍ୟେ । ଇଙ୍ଗିତେ ତାଙ୍କର
ଯାହା ହେବ । କି କରିବ ମୂର୍ଖ ମୋହପର
ନିଜ ବଳେ ?

ସୁନାରୁଣୀ

ଲକ୍ଷ୍ମୀ ମୋର କପର ଅଛି ସେ
ଜାଣ କଛି ?

ସୁନାରୀ

ଜାଣେ—ଏଇ ମାଡକ ନମିଷେଁ,
ଶୁଣିଲ ମୁଁ ମୂର୍ଚ୍ଛା ହୋଇ ପଡ଼ନ୍ତ କାହିଁକ—
ମହାପାତ ବ୍ୟସ୍ତ ଘର ।

ସୁନାରୁଣୀ

ମୋ ଲକ୍ଷ୍ମୀ ପାଇଁକ
ଏ କଥା ଶୁଣି ମୋ ବୁକୁ ଯାଉଅଛି ଥର,
କେଜାଣି କ ହେବ ସତେ ।

ସୁନାରୀ

ଲକ୍ଷ୍ମୀ ଅନୁସର
ମୂର୍ତ୍ତି ମୁଁ ଗଢ଼ିବ—

ସୁନାରୁଣୀ

ମୂର୍ତ୍ତି, ମୁଣ୍ଡ ଡା' ଖାଇବ,
ଢଣିଯାଏ ମତେ ଯେହ୍ନେ—
ଶୂଲ ଘରେ ଯିବ,
ସନ୍ଧ୍ୟା ଆସି ହେଲ୍ଲ ଏବେ । ହେ ସାକ୍ଷିଗୋପାଳ,
ଲକ୍ଷ୍ମୀରେ ଢଅ ହେ ତବ ଘଣ୍ଟ ଆଡ଼ୁ ଆଳ ।



ବେଲେଶ୍ୱର ମହା'ପାତ୍ରଙ୍କ କୁଟୀରାଙ୍ଗନ । ଅଙ୍ଗନରେ ବୃକ୍ଷ ମହାମାନେ ଓ ତଦୀୟ ପତ୍ନୀ । ଏକ ଗୃହାଭ୍ୟନ୍ତରରେ ଲକ୍ଷ୍ମୀ ରୋଗଶଯ୍ୟାରେ ଶାୟିତା । ତା'ର ଶଯ୍ୟା ବାହାରକୁ ଦେଖା ଯାଉଛି । ସମୟ ଅସନ୍ନ ସନ୍ଧ୍ୟା ।

**ପତ୍ନୀ**

କଥା ମୋର ନ ଶୁଣିବ, ରୋଗ ଏବେ ଦଶା,
ଲୋକେ ଡରି, ହୁଏ ଏବେ ନଜେ ଲୋକହସା;
କହିଲ, 'ଉଚ୍ଛୁର କର ଆଜ କଚ୍ଛି ଦିନ—
ଦିନୁଦିନ ପିଲା ମୋର ହୁଏ ଶ୍ରୀହୀନ,
ଶାଶୁଘର ଯିବା ଶୁଣି କଲା ଯାଏ ପଡ଼ି,
ମୁଖ ଦିଶେ ଦଶମାସ ରୋଗ ଭୋଗ ପରି,

ଆଜ ମାସେ ତେଣ ହେଲେ କ୍ଷତ କବା ଥିଲ,
ତାଙ୍କର ଘରେ ତ ପିବ ଦନେ ତାଙ୍କ ପିଲ !
ତା'ପରେ ସେଦନ ସେହ୍ନ କଠିଣ ଝିଙ୍ଗାସ
ମାରବାକୁ ତାକୁ ଯେହ୍ନେ ତୁମ ଅଭିଳାଷ !
ତୁମ ଟାଣ କଥା ତାର ରକ୍ତ ନେଲ ଶୋଷି,
ମୋ ପିଲର ଦୁଃଖପାଇଁ ଆଜ କାରେ ଦୋଷି ?
ଦୁର୍ବଳ ହେଲରୁ ପିଲ ମୂର୍ଚ୍ଛା ଦେଖା ଦେଲ
ମୂର୍ଚ୍ଛା ପରେ ଜର ଏବେ ପିଲପ୍ରାଣ ନେଲ ।
ଦଶ ଦନ ହେଲ ଆଜ ବଢ଼ୁଅଛି ଜର
ମାନୁନ ଔଷଦ, ଏବେ କ ଉପାୟ କର ।
ଖାଅ ଏବେ ଧନେ ମୋର, ନଅ ତାର ପ୍ରାଣ,
ତା ସାଥେ, ମୋ ପ୍ରାଣ ମଧ କର ଯମେ ଦାନ ।

## ବେଲେଶ୍ୱର

କପାଁ ଏତେ ଟାଣ କଥା କହ ସତେ ମତେ,
ଗୃହସ୍ଥର ଦୁଃଖ, ସଖି, ବୁଝିବ କେମନ୍ତେ ?
ଧନ ଗଲେ ପୁସ୍ତ ମୋର ହେବ ଅନ୍ଧକାର,
ଏ କଥା କ ମୁହିଁ ପ୍ରାଣେ କରନ ବସ୍ମର ?
ଭାବଲେ ନୟନ ହୁଏ ଅନ୍ଧ ବାଷ୍ପଭରେ,
କଣ୍ଠ ହୁଏ ଜଡ଼, ମନ ବଷମ ବକାରେ
ଉତ୍କଣ୍ଠ ହୁଅଇ ସଖି ! କନ୍ତୁ ଏ ସଂସାର
ବଢ଼ନ୍ତି ନଷ୍ଠୁର ଜାଣ । କ ଯାଏ ଏହାର

ତୁମେ ଆମେ ଗୁରୁଶୋକେ କାନ୍ଦକାନ୍ଦ ମଲେ,
କାନ୍ଦୁଥିଲେ ଆହ୍ଵା ବୋଲି କନ୍ଥବନ ଥରେ !
ଅପବାଦ, ପରିହାସ ଅଧିକରେ ଫଳ,
ତାକୁ ଉର ମୋଛୁବାକୁ ହେବ ଆଖିଜଳ ।
ପିଲ୍ଲ ନାମେ ଉଠେ ହୁରି ଗ୍ରାମେ ବାର ବାର,
ସୁଖ କି ଲଗନ୍ତା ସଖି, ଧରି ସେ ଜଞ୍ଜାଳ ?
ବଚନ ମୁଁ ଦେଲି ତେଣୁ ଶ୍ଵଶୁରେ ଭୁଲିତେ,
ଜାଣି କି ଥିଲି ମୁଁ ସଖି, ଫଳ ବପରୀତେ
ଘଟିବାର ଏହ୍ଵପରି ? ପୁଣି ସେ ଝିଙ୍ଗାସ—
ସେଥିରେ କି ଥିଲି ମୋର ମନ୍ଦ ଅଭିଳାଷ ?
ମୁଦ୍ଧ କଥା ନେଇ ଗ୍ରାମେ ଲଭ୍ଭ ନାହିଁ ଗୋଳ,
ଦୁଇ ଦିନ ପରେ ଗ୍ରାମେ ଆସିବ ଶ୍ଵଶୁର,
ଏଥିରେ ଘଟିଲ୍ଲ ଯଦ୍ଧ ପୁଣି ଅନାସ୍ଥର—

**ଲକ୍ଷ୍ମୀ**

( ନେପଥ୍ୟରୁ )

ବୋଉ ! ବୋଉ !

**ପତ୍ନୀ**

ନଦ ଦେଖି ଘଙ୍ଗିଲ୍ଲ ମାଆର ।

ମହାପାତ୍ର-ପତ୍ନୀ ଭିତରକୁ ଗଲେ ଓ ଶଯ୍ୟା ଉପରେ ବସିଲେ ।
ବେଲେଶ୍ଵର ବିପର୍ଣ୍ଣ ବଦନରେ ଘର ଭିତରକୁ ଅନାଇ
ବାରଣ୍ଡାରେ ଠିଆ ହୋଇ ରହିଲେ ।

### ମହାପାତ୍ରୀ

ମାଆ ମୋର, ପ୍ରାଣ ମୋର, ଗଣ୍ଠି ସୁନା ମୋର,
କେମନ୍ତେ ଲାଗୁଛୁ ଦେହ ?

### ଲକ୍ଷ୍ମୀ

ହାତ ଆଣି ତୋର,
କପାଳରେ ଥୁଅ ବୋଉ !

### ମହାପାତ୍ରୀ

( କପାଳରେ ହାତ ଦେଇ )

ଏ କ ଲୋ ଂ ସଙ୍ଗାଳ,
ଦେହେ ତୋର ଫୁଟେ ଖଇ ! ମୋ ଧନରେ ସାର
ଦେଲଣି ଏ ତୁଳ ଜର !

### ଲକ୍ଷ୍ମୀ

ଶୋଷ, ବୋଉ, ଘର;
ପାଣି ଦିଅ ।

### ମହାପାତ୍ରୀ

ଜର ପଗ ? ପିଇବୁ ସଙ୍ଗାଳ ?
ବୈଦ୍ୟ ଆସୁ, ଦେଖୁ ଦେହ—

### ବେଲେଶ୍ୱର

ବୈଦ୍ୟ ଆସିଲେଣି—

## ଲକ୍ଷ୍ମୀ

ବୋଉ, ବୋଉ, କହ ତାଙ୍କୁ ଆଜ ଆସିବେନ
ନ ମାଗିବ ପାଣି ପଛେ—

## ବେଲେଶ୍ୱର

ମାଆ ମୋର ଔଷ
ଖାଇବାକୁ ଡର, ହେଲେ ଖାଲ 'ଶୋଷ' 'ଶୋଷ'
ଦେହ ଭଲ ହେବ କେମ୍ନେ ?

ବୈଦ୍ୟର ପ୍ରବେଶ, ମହାପାତ୍ର-ପତ୍ନୀ ଦ୍ୱାରରେ ଠିଅ ହେଲେ ।

## ବେଲେଶ୍ୱର

ଆସନ୍ତୁ ଏ ଘରେ;
ଦେଖନ୍ତୁ ଅବସ୍ଥା କସ । ଔଷ ଆଜ ଥରେ
କହନ୍ତୁ କ ଦେବା ପୁଣି ।

ବୈଦ୍ୟ ଗୃହରେ ପ୍ରବେଶ କର ଲକ୍ଷ୍ମୀର ନାଡିକା ଓ ଅନ୍ୟାନ୍ୟ
ଅଙ୍ଗ ପରୀକ୍ଷା କରେ ।

## ବୈଦ୍ୟ

ବଢ଼ିଲ ଯେ ଜର !—
ଚନ୍ତା ତେବେ ନାହିଁ କଛୁ—ଦେବ ଏଇ ଥର
'ଜ୍ୱର-ଗଜ-ମୃଗଶତ୍ରୁ'—ହୋଇବ ନକାଶ
ଏକାହକେ ସବୁ ଦୋଷ ।

ମହାପାତ୍ରୀ

( ଦୂରରେ ଥାଇ )

ପିଇବାରେ ଆଶ

ବଢ଼ୁଛି ହେଉଛି—

ବୈଦ୍ୟ

କିଛି ନ ଶୁଣିବ ତାହା ।

ବନ୍ଦୂ ଜଳ ଦେଲେ, ତୁମେ ଦେଖ ତୁମ ସ୍ପୃହା ।

ମହାପାତ୍ରୀ

ଛନ ଛନ ହେଲ ପେଟେ ଅନ୍ନ ନାହିଁ ପଡ଼ ।

ବୈଦ୍ୟ

ପାଚନହିଁ ଦେବ କଛୁ ଗୁଡ଼ ଦୁଇ ଘଡ଼ ।

ବୈଦ୍ୟ ବେଳେଶ୍ବର ଦୁହେଁ ବାହାରକୁ ଚାଲିଗଲେ । ମହାପାତ୍ର-ପତ୍ନୀ ପୁଣି ଶଯ୍ୟା ନିକଟକୁ ଅସି ବସିଲେ ।

ଲକ୍ଷ୍ମୀ

ନନା କାହିଁ ଗଲେ ବୋଉ ? ଗଲେଣି ବଇଦ ?

ମହାପାତ୍ରୀ

( ମୁଣ୍ଡ ସାଉଁଳ ସାଉଁଳ )

ହଁଅଁ ଲୋ ମା—

ଲକ୍ଷ୍ମୀ

ଶୁଣ ବୋଉ, ଏତେ ତ ପଇଡ଼

ଫଳରୁ ବାଡ଼ରେ; ମତେ ଢାଅ ନା ଗୋଟାଏ
ପିଇ ପାଣି ଏକାଥରେ ଶୋଷ ମୋ ମିଟାଏ ।
ବୈଦ୍ୟ ତ ଜାଣିବେ ନାହିଁ ।

**ମହାପାତ୍ରୀ**

ଚୁପ୍ ବାଇଆଣି,
ମରିବାକୁ ଇଚ୍ଛା ତୋର ?

**ଲକ୍ଷ୍ମୀ**

ହୁଁଅଁ ମେ କେ ଜାଣି,
ମରିବାକୁ ଇଚ୍ଛା ହୁଏ—

**ମହାପାତ୍ରୀ**

( କାନ୍ଦ କାନ୍ଦ ହୋଇ )

ଆମକୁ ଅନାଥ
କରି, ତୋର ମରିବାକୁ ଇଚ୍ଛା ହୁଏ ଜାତ ?
ତୁଣ୍ଡରେ ନ ଆଣ ଧନ, ସେ କଥା ତୁ ଥରେ ।

**ଲକ୍ଷ୍ମୀ**

ହଉ ଆଉ ନ କହିବି । କିନ୍ତୁ ବୈଦ୍ୟ ଡରେ
ପିଇବାକୁ ନ ଦେଲେ ତ ମରିବି ନିକର;
ଢାଅ ବୋଉ, କିଛି ମତେ ।

**ମହାପାତ୍ରୀ**

ସେ ସବୁ ଫିକର
ରଖ୍ ଏବେ । ଦୁଇ ଘଡ଼ି ପରେ ତୁ ପାତନ—

## ଲକ୍ଷ୍ମୀ

ମଲି ଛେବେ, ମଲି ବୋଉ—

## ମହାପାତ୍ରୀ

କପାଁ ଅକାରଣେ

ଆକୁଳ ହେଉଛୁ ଏତେ ? ତୁନ ହୋ ସଙ୍ଗାଳି,
କରୁଛୁଁ ଘା' ଛାଡ଼ା ଦିନା ଚୋ ଭଲ ବଗୁର ।

## ଲକ୍ଷ୍ମୀ

( ଦ୍ୱାର ଅଡ଼ବୁ ଅନାଇ )

ତୁମେ କପାଁ ଆସୁ ନାହଁ ? ବୁଝି ହେ ଏମାନେ
ନ ପାରନ୍ତ ଇଚ୍ଛା ମୋର । କ ଯେ ଶୋଷ ପ୍ରାଣେ
ନ ପାରନ୍ତ ବୁଝି ଏ ଗୋ—

## ମହାପାତ୍ରୀ

ଡାକୁଛୁ କାହାରେ

ଧନ ମୋର ? ନନା ପଗ୍ ଗଲେଣି ବାହାରେ
କେତେ ବେଳୁଁ ।

## ଲକ୍ଷ୍ମୀ

ନାହିଁ ବୋଉ, କାରେ ଡାକୁ ନାହିଁ ।
କନ୍ତ ବୋଉ, ନଦବେଳେ ଦେଖିବାର ପାଇଁ
ଆସିଥିଲେ କେହୁ ଏଥି ?

## ମହାପାତ୍ର

କେହି ନାହିଁ ଧନ !

ସହସା ଦେବତାର ଛାୟାମୂର୍ତ୍ତି ଦ୍ୱାରଦେଶରେ ଠିଆହେଲା; ଲକ୍ଷ୍ମୀର
ମୁଖରେ ହାସ୍ୟ ଦେଖା ଦେଲା । ଜନନୀଙ୍କର ଉପସ୍ଥିତି ଯୋଗୁ
ସେମାନେ କେବଳ ପରସ୍ପରକୁ ନୀରବରେ ଚାହିଁ ରହିବା
ଛଡ଼ା ଆଉ କିଛି କରି ପାରିଲେ ନାହିଁ । ଲକ୍ଷ୍ମୀକୁ
ବହୁକ୍ଷଣ ଚୁପ୍ ରହିବାର ଦେଖି ଲକ୍ଷ୍ମୀ-ଜନନୀ ନିଦ୍ରା
ଆସିବାର ଭାବି, ସେଠାରୁ ଉଠି ଠିଆ ହେଲେ ।

## ମହାପାତ୍ରୀ

ମାଆ ମୋର ଶୁଅ କ୍ଷଣେ, ଯିବେ ମୁଁ ପାଚନ ।

## ଲକ୍ଷ୍ମୀ

ଆଚ୍ଛା ହେଉ ।

ଲକ୍ଷ୍ମୀ-ଜନନୀ ବାହାରିଗଲେ । ଦେବତା ଶଯ୍ୟାରେ ବସି ଲକ୍ଷ୍ମୀର
କପାଳ ସ୍ପର୍ଶ କରିବାକୁ ଲାଗିଲେ ।

## ଲକ୍ଷ୍ମୀ

କିବା ଶାନ୍ତି, କିବା ଦେଲ ସୁଖ
ଆହା, ଛୁଇଁ ତପ୍ତ ଭାଲ । ଅଙ୍ଗୁଳିରେ ମୁଖ
ଆଉଁସ ହେ ଧୀରେ ବନ୍ଧୁ !

## ଦେବତା

( ସେହିପରି କରି )

ଆହା ଲକ୍ଷ୍ମୀ-ମଣି,

ବଅନ୍ତା ଯନ୍ତ କେ ମତେ ସେବା-ଯୋଗ ଆଣି
ଚରଦନ ଏଇପରି । ଆନ-ପୂଜା ଠାରୁ
ସୁଖ ମତେ ବେଶି ମିଳେ ତୁମର ସେବାରୁ ।
କେମନ୍ତେ ଲଗୁ ଛ ଦେଢ ?

**ଲକ୍ଷ୍ମୀ**

ତୁମେ ସିନା ଜାଣ ?

**ଦେବତା**

( ସମସ୍ତ ଦେହ ଦେଖି ହସି ହସି )
ଲକ୍ଷ୍ମୀ-ରାଣି, ହେଲା ବେଳ, କରିବ ପ୍ରୟାଣ
ଏଥର ଶ୍ୱଶୁରାଳୟେ ।

**ଲକ୍ଷ୍ମୀ**

ଜନମ ତୁମର
ଥାନ ଯଦ ଦେବେ ପଦେ, ତେବେ ହେ ମୋହର
ଆପତ୍ତି ତ କଛୁ ନାହିଁ !

**ଦେବତା**

ମାନବ ତ ମତେ ?
ବନମାନ ଖେଳବ ତ ମୋହର ସଙ୍ଗତେ ?

**ଲକ୍ଷ୍ମୀ**

ରାଣ ମୋର, ଏତେ ସ୍ନେହେ ଲାଗେ ମତେ ଲାଜ !

## ଦେବତା

( ହଠାତ୍ ଦୁଆର ଅଡ଼କୁ ଅନାଇ )

ଆସିଲେଣି ଲକ୍ଷ୍ମି, ତବ ସଙ୍ଗିମୀ-ସମାଜ;
ଯାଏଁ ମୁହିଁ—

( ଠିଆ ହୋଇ )

ବେଳେ ଆସି ଲଗ୍ନ ହେବ ରଥ,
ଯିବ ତହିଁ, କନ୍ଧାଏ ଡାକନେବେ ପଥ ।
ଯାଏଁ ଏବେ ।

## ଲକ୍ଷ୍ମୀ

ନାଁ ମତେ ଭୁଲିତେ ହେ ହରି,
ଏମାନଙ୍କ ସାଥେ ବନ୍ଧୁ, ନାହିଁ ପାରେ ଚଳି ।

ଦେବତା ଚାଲିଗଲେ । ସେତେବେଳକୁ ଅନ୍ଧକାର ହୋଇ ଆସିଥିଲା । ଲକ୍ଷ୍ମୀର ସହଚରି ସଖୀ ସେଇ ଅନ୍ଧକାର ଗୃହରେ ପ୍ରବେଶ କଲେ ।

## ପଦ୍ମା

ଅନ୍ଧାର ଯେ !

## କେମା

ଦୀପ କାହିଁ ?

## ଫୁଲ

ସେଇ କୋଣେ ଥିବ ।

ନେତା

ଖୋଜ୍ ପଦ୍ମା !

ପଦ୍ମା

ଖୋଜ୍ ଫୁଲ !

କେମା

ଅନ୍ଧାରେ ଦିଶିବ ?

ଫୁଲ

ପାଇଲିଣି ।

ନେତା

ଟିକମିକ ରଖିଛ କେ କଏ ?

ପଦ୍ମା

ମୁଁ ରଖିଛି ।

କେମା

ମୋ ହାତରୁ ଏଇ ଶୋଲ ନିଏ ।

ସେମାନେ ଦୀପ ଲଗାଇଲେ । ଦୀପର କ୍ଷୀଣାଲୋକରେ କ୍ଷୁଦ୍ର ଗୃହଟି ଆଲୋକିତ ହୋଇ ଉଠିଲା । ସେମାନେ ସମସ୍ତେ ଲକ୍ଷ୍ମୀର ଶଯ୍ୟା ଗୃହଆଡ଼େ ଚାଲିଗଲେ ।

କେମା

ଲକ୍ଷ୍ମୀ ନାନ,

ଫୁଲ

ଶୋଇଛୁ କି ?

ନେତ

ଶୁଣୁ ନାହିଁ କଥା ?

ପଦ୍ମା

ହାତ ମାରେଁ,

କେମା

ଦେଖିଁ ଦେହ,

ଫୁଲ

ଛୁଏଁ ଦେଖି ମଥା ।

ନେତ

ପାଦ ଦେଖେଁ—କି ଶୀତଳ !

ପଦ୍ମା

ଥଣ୍ଡା ବଡ଼ ହାତ !

କେମା

ଦେହ ସାରା ବହେ ପାଣି,

ଫୁଲ

ସେଇପରି ମାଥ !

ସମସ୍ତେ କ୍ଷଣକ ପାଇଁ ପରସ୍ପର ଅଙ୍ଗକୁ ଗୃହିଁଲେ ।

ଲକ୍ଷ୍ମୀ

( ତନ୍ଦ୍ରାରୁ ଉଠି )

ବୋଉ, ବୋଉ !

ପଦ୍ମା

ନାହିଁ ବୋଉ,

କେମା

ଘଞ୍ଚୁଛି ଘାଟନ ।

ଫୁଲ

ଲକ୍ଷ୍ମୀ ନାନ, କହିବୁ ନ ଆମ୍ଭକୁ ବଚନ ?

ଲକ୍ଷ୍ମୀ

( କ୍ଷୀଣ ସ୍ୱରରେ )

ଯାଉଛି ଲେ—ମନେ ରଖ—ବୋଉ କାହିଁ ଡାକ ।

ପଦ୍ମା

( ଉଚ୍ଚ ସ୍ୱରରେ )

ଏ ମାଉସି—

କେମା

( ଉଚ୍ଚ ସ୍ୱରରେ )

ବଡ଼ ମାଈଁ—

ଫୁଲ

ଯାଅ ଜଣେ ପାଖ ।

ନେତ ଦ୍ରୁତ ଗଢରେ ବାହାରକୁ ଗଲା । କିଛି କ୍ଷଣ ପରେ ଲକ୍ଷ୍ମୀ-ଜନନୀ ବ୍ୟସ୍ତ ହୋଇ ଘରେ ପଶି ଏକାବେଳକେ ଲକ୍ଷ୍ମୀଙ୍କ କୁଣ୍ଢାଇ ଧରିଲେ ।

ମହାପାତ୍ରୀ

( କନ୍ଦନ ସ୍ୱରରେ )

ଦେଖୁ ବଢେ ପାଣି ଧାର !

ଏ କି ଦେଖି ଧନ !

ଲକ୍ଷ୍ମୀ

ବୋଉ ମୋ'ର, ଗଲ ମୁହିଁ—ରଖିଥିବୁ ମନ ।

ମହାପାତ୍ରୀ

ମନ ମୋର ପୋଡ଼ୁଯାଉ—ଚଣ୍ଡାଳୁଣୀ ପିଲା

କି କଥା କହୁ ଲେ ତୁହି !

ପଦ୍ମ

( ହଠାତ୍ ବାହାରକୁ ଅନାଇ )

ଏ କିଏ ଦିଶିଲା ?

ଜେମା

ଆଲୋକର ରଥ ଏକ ।

ଫୁଲ

( ଲକ୍ଷ୍ମୀର ମୁଣ୍ଡ ଅଡ଼କୁ ଅନାଇ )

ମୂର୍ତ୍ତି ସେ କାହାର ?

# ଲକ୍ଷ୍ମୀ

( ଶେଷ ନିଶ୍ୱାସ ସହ )

ଗଲୁ ବୋଉ, ମୋହ ସଙ୍ଗେ ସାରି ତୋ ଜଞ୍ଜାଳ ।

ଲକ୍ଷ୍ମୀ-ଜନନୀ ମୂର୍ଚ୍ଛିତା ହୋଇ ଶବ ଉପରେ ପଡ଼ି ରହିଲେ । ସଖୀମାନେ ସ୍ତବ୍ଧ ହୋଇ ଠିଆ ହୋଇ ରହିଲେ । ଏହି ସମୟରେ ବୈଦ୍ୟ, ବେଲେଶ୍ୱର ଓ ଲକ୍ଷ୍ମୀର ଶ୍ୱଶୁର ଆସି ଦ୍ୱାରଦେଶରେ ଚକିତଭାବରେ ଠିଆ ହେଲେ.......



# ୭

ମନ୍ଦିରରେ ସାକ୍ଷିଗୋପାଳ ମୂର୍ତ୍ତି-ପୀଠ । ସାକ୍ଷିଗୋପାଳଙ୍କ ପାର୍ଶ୍ୱରେ ନବପ୍ରତିଷ୍ଠିତା ରାଧାପ୍ରତିମା । କୁମାରୀ ଦେବଦାସୀ-ମାନଙ୍କର କଥୋପକଥନ, ଗାନ ଓ ନୃତ୍ୟ ।

**ପ୍ରଥମ କୁମାରୀ**

ତା'ର ମୁଖ ପଦ୍ମ ସଖି, ଦିଶେ ଅବିକଳ,

**ଦ୍ୱିତୀୟା**

ତା'ର କଣ୍ଠ, ତା'ର ନେତ୍ର-ଯୁଗ ଢଳଢ଼ଳ ।

**ତୃତୀୟା**

ତପୋବନ୍ତୀ କନ୍ୟା ସତେ— କି ତପସ୍ୟା ବଳେ
ଲଭିଲା ଆସନ ଏଇ ପୁଣ୍ୟ-ପୀଠ ପରେ

ଚତୁର୍ଥୀ

ପ୍ରେମ ତ ତପସ୍ୟା ତାର—ମନ୍ତ୍ର, ଆରାଧନା,
ତା'ଘେନ ସେ ଦେବତାଙ୍କୁ କଲ ବନ୍ଦାପନା ।

ପ୍ରଥମା

ମନ୍ଦିରେ ତ ନିତ୍ୟ ଆମେ ନୃତ୍ୟ କରୁଥାଇଁ,
କା' ପ୍ରାଣେ ଉକନ୍ତି ଥାଏ ଦେବତାର ପାଇଁ ?

ଦ୍ୱିତୀୟା

ବାଦ୍ୟତାନେ ପଦ୍ୟ ଛନ୍ଦେ, କର ଦୋଳୁଥାଏ,
ଏ ପୋଡ଼ା ଚିତ୍ତନ୍ଲେ ସଖି, କାହ୍ନିଁ ଗୂଳପାଏ !

ତୃତୀୟା

ପ୍ରେମ ପୁଣି କରେ ଏହା ! ପଥର ମୂରତି !
ଜୀବ ଧରି, ଜୀବ ସାଥେ କରଇ ପୀରତି !

ଚତୁର୍ଥୀ

ଆସ ଏବେ ଗୁଣ ତା'ର ଗାଇ ନେ ସଜନ,
ଦେବତାରେ ତୋଷୁଁ ହେଲେ ଆଜନ୍ମ ରଜନୀ ।

ପ୍ରଥମା

ତୋଳ ଧର ଫୁଲମାଳା, ଜଣ ଜଣ କରି
ଭଜଣୀର କଣ୍ଠେ ଦେବା ନୃତ୍ୟ କରି କରି ।

[ ସମବେତ ନୃତ୍ୟ—ମଣିପୁରୀ ]

# ଗାନ ଓ ନୃତ୍ୟ

ପ୍ରଥମା

ତା' ପଦଧୂଳି ଲଗି ପାବନ ପଥ ଏଇ ଗାଆଁର,

ଦ୍ୱିତୀୟା

ସୁରଭି ଛୁରଅନା, ନଶୀଥ ଅଭସାରେ ତାହାର ।

ତୃତୀୟା

ସୁରଭି ନଶ୍ୱାସେ କେତେ ସେ ଫୁଟାଇଛୁ ବକୁଳ,

ଚତୁର୍ଥୀ

ଚରଣ-ପରଶରେ କେତେ ସେ ଘାସେ କଲା ଆକୁଳ ।

ପ୍ରଥମା

ନଣ୍ଡକ ଯାଇ କ ସେ ପାବନ କଲା ନଣ୍ଡଚୋଠରେ,

ଦ୍ୱିତୀୟା

କମଳେ ଲାଜ କେତେ ଥର ସେ ଦେଲା ତା'ର ଓଠରେ ।

ତୃତୀୟା

କନକ-ପ୍ରତମା ତା', ତୋଷିଲା କେତେ ଜନନୟନ,

ଚତୁର୍ଥୀ

ବାଳକା-ବୟସେ ସେ ପ୍ରୀତି-କୁସୁମ କଲା ଚୟନ ।

ପ୍ରଥମା

ପ୍ରଣୟେ ଜଣିଲା ସେ ମରଣେ

ଦ୍ୱିତୀୟା

ପ୍ରଣତ ହଅ ତା'ର ଚରଣେ ।

ତୃତୀୟା

ଯେ ପୀଠେ ପୂଜାରଣୀ ଥିଲ ସେ

ଚତୁର୍ଥୀ

ଉତ୍ତଳ ଚର୍ଣ୍ଣି ପୂଜା ବଳାଟେ !

ପ୍ରଥମା

ଜନକ-ଜନମୀ ତ ସୁଭଗ,

ଦ୍ୱିତୀୟା

ମାଟି-କୁଟୀର ହେଲ ସରଗ ।

ତୃତୀୟା

ଦେବୀ-ଦେବତା ଏଙ୍ପର କ

ଚତୁର୍ଥୀ

ଦୁଅନ୍ତ ଜାତ ଦେହ ଧରକ !

ପ୍ରଥମା

ମାଳା ତାହାରେ ଦେବା ଆସ ଲେ,

ଦ୍ୱିତୀୟା

ଦେହେ ବୋଳବା ଚନ୍ଦ ବାସ ଲେ !

ତୃତୀୟା

ନାଟକୁ ହଅ ତାଳ ବାଦ୍ୟକ,

# ଚତୁର୍ଥୀ

## ସେବକା ଲକ୍ଷ୍ମୀ, ଗା'—ନାୟକ

[ ସମବେତ ନୃତ୍ୟ—ମଣିପୁରୀ ]

# ଗାନ

## ପ୍ରଥମା

[ ଗାନ, ନୃତ୍ୟ ଓ ମାଳାଅର୍ପଣ ]

ମୁରଲୀ ଯୁଗେ ଯୁଗେ ବଜାଇ
ତୁମେ ନା' ପ୍ରଭୁ ତବ ଅସୀମ-ପ୍ରୀତି-ରସେ
ସସୀମ ପ୍ରାଣ ଦଅ ମଜାଇ ?
ଯଖଣେ ଶୁଣି ଡାକ ତୁମର
ହୃଦୟେ ଫୁଟେ ଶୁଭ୍ର କମଳ
ଚେତନା ଦଏ ସେ ଯେ ହଜାଇ
ମୁରଲୀ ଯୁଗେ ଯୁଗେ ବଜାଇ । (ଧ୍ରୁବ)

## ଦ୍ୱିତୀୟା

( ଗାନ, ନୃତ୍ୟ ଓ ମାଳାଅର୍ପଣ )

କପାଇଁ ତୁମେ ବେଣୁ ବଜାଅ
ଶୂନ୍ୟ ଲଭେ ପ୍ରାଣେ ଖୋଜାଅ ?
ପିପ୍ୟାସ ଦଅ ପ୍ରାଣେ ଚେଜାଇ
ମୁରଲୀ ଯୁଗେ ଯୁଗେ ବଜାଇ । ( ଧ୍ରୁବ )

## ତୃତୀୟା

( ଗାନ, ନୃତ୍ୟ ଓ ମାଲାର୍ପଣ )

ସେ ବେଣୁ ସୃଷ୍ଟିର ମାଝରେ
ଭୁବନ ଝଙ୍କଣିତ ପ୍ରୀତିରେ;
ପ୍ରାଣେ ସେ ରସେ ଯାଏ ରଁଜାଇ
ମୁରଲୀ ଯୁଗେ ଯୁଗେ ବଜାଇ । ( ଧ୍ରୁବ )

## ଚତୁର୍ଥୀ

( ଗାନ, ନୃତ୍ୟ ଓ ମାଲାର୍ପଣ )

ସେ ବେଣୁ ଶୁଣି ଆମ ଭଗିନୀ
ରଂସେ ହୋଇଲ ଅନୁରାଗିଣୀ;
ଅମର ହେଲ ଏଇ ଅମରେ ପୀଠେ ରହି
ପ୍ରଣୟ ଲାଗି ସବୁ ହଜାଇ
ମୁରଲୀ ଯୁଗେ ଯୁଗେ ବଜାଇ । ( ଧ୍ରୁବ )

( ଧୀରେ ଧୀରେ ସମସ୍ତଙ୍କର ପ୍ରସ୍ଥାନ )

( ଲକ୍ଷ୍ମୀ ଓ ଦେବତାର ଯୁଗ୍ମସଙ୍ଗୀତ ଓ ନୃତ୍ୟ ।
ଗାନର ରାଗ ମିଶ୍ରଭୀମପଲଶ୍ରୀ, ନୃତ୍ୟ ଭାରତନାଟ୍ୟଂ )

## ଦେବତା

ନିର୍ମଳ ରଜନୀ ହେଲ ରେ ସଜନ,
ମରମ ମିଳାଅ ଅନୁରାଗିଣି,
ପ୍ରଣୟ କ୍ଷୁଧା ମୋ' ନୁହେ ଶାନ୍ତ
ଆନନ୍ଦ ଦିଅ ପ୍ରାଣତୋଷିଣି !

## ଲକ୍ଷ୍ମୀ

ଯାଚ ମୋ ପ୍ରଣୟ୍ ଢଅ ଗୋ ସରମ
ଏକାନ୍ତ ତବ,
ମୂର୍ତ୍ତି;ସେ ପରମ,
ସ୍ତୋତ୍ର ମୁଁ ଯେ ରେଣୁ ପଦ ପ୍ରାନ୍ତେ
କ ସୁଧା ଦେବ ମୋ ଘନ ମରମ !

## ଦେବତା

ସ୍ତୋତ୍ରରେ ଗୋ ବନ୍ଧା ମୋ ପୀରତି
ଘନ ପାଇଁ ବକ୍ଷେ ମୋ ଆରତି;
ସଖି, ହୃଦୟ୍ ତୋ ଅକଳ୍ପ୍ଷ କମଳ
ରେଣୁ ମୋହନ ତୋ ମର୍ମର ଭାରତୀ ।

## ଉଭୟେ

ଏକ ଆମେ,
ଏକ ଆମେ,
ଭୋଗ ପାଇଁ ହୋଇଅଛୁଁ ଯୁଗ୍ମ
ଲୀଳାର ସୃଜନ-ସରେ ସୂର୍ଯ୍ୟ ଓ ପଦ୍ମ
ବନ୍ଧୁ ହେ, ଯୁଗ ଯୁଗ ଯୁଗଳ ରୂପେ
ଗଢ଼ୁଥିବା ପୀରତିର ସଦ୍ମ ।

( ପଠ ପଢନ )

---

ମୁଦ୍ରାକର-ଶ୍ରୀ ନିତ୍ୟାନନ୍ଦ ଦାସ, ନାଉ ଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର-୧୯୬୦